ଅର୍ଥ ବିନିଯୋଗ ହୋଇ କାର୍ଯ୍ୟଟି ସଫଳତା ଲାଭ କଲା । କଟକରେ ଆକାଶବାଣୀ କେନ୍ଦ୍ର, ବାଣୀ ବିହାରରେ ଉତ୍କଳ ବିଶ୍ୱବିଦ୍ୟାଳୟ, ହୀରାକୁଦ ନଦୀବନ୍ଧ ଯୋଜନା, ଭୁବନେଶ୍ୱରରେ ନୂଆ ରାଜଧାନୀ, ଓଡିଶାରେ ଅନେକ ଶିଳ୍ପାଞ୍ଚଳ ପ୍ରତିଷ୍ଠା ଓ ଉଡିଶା ଉଚ୍ଚ ନ୍ୟାୟାଳୟ ସ୍ଥାପନା ଦିଗରେ ମହତାବଙ୍କ ଭୂମିକା ଥିଲା ଉଲ୍ଲେଖନୀୟ । ନେହେରୁଙ୍କ ମନ୍ତ୍ରୀ ମଣ୍ଡଳରେ ସେ କେନ୍ଦ୍ରମନ୍ତ୍ରୀ ଓ ବମ୍ବେର ରାଜ୍ୟପାଳ ଭାବେ ତାଙ୍କର ଦାୟିତ୍ୱ ସୁଚାରୁରୂପେ ନିର୍ବାହ କରିଥିଲେ । ଏ ସମସ୍ତ ଦାୟିତ୍ୱ ସତ୍ତ୍ୱେ ଓଡିଶା ରାଜନୀତିର ପଶାପାଲିରେ ସଫଳ ଗୋଟି ଚାଳନା ଥିଲା ତାଙ୍କ ରାଜନୀତିକ ଜୀବନର ଏକ ବିଶିଷ୍ଟ ଦିଗ । ଏକାଧାରରେ ସେଥିଲେ ଜଣେ କୁଶଳୀ କୁଟନୀତିଜ୍ଞ, ସଫଳ ରାଷ୍ଟ୍ରନୀତିଜ୍ଞ, ବିଚକ୍ଷଣ ରାଜନୀତିଜ୍ଞ, ଅସାମାନ୍ୟ ଐତିହାସିକ, ଅସାଧାରଣ ଔପନ୍ୟାସିକ- ନାଟକ-ଗାଳ୍ପିକ-କବି-ସାମ୍ବାଦିକ ଓ ବାଟେ ଘାଟେ ପରି ସ୍ତମ୍ଭକାର । ଇଂରେଜ ଶାସନର କ୍ରୁର ଦୃଷ୍ଟିକୁ ବେଖାତିର କରି ସ୍ୱାଧୀନତାର ବହୁ ପୂର୍ବର ଜନତାଙ୍କ ପାଇଁ 'ପ୍ରଜାତନ୍ତ୍ର'ସମ୍ବାଦପତ୍ର ପ୍ରକାଶ କରିଥିଲେ । ବାଧାବିଘ୍ନର ଅଲଂଘନିୟ ନିନ୍ଦିତ ଉଦ୍ୟମ ଫଳରେ କିଛିବର୍ଷ ପାଇଁ ତା'ର ପ୍ରକାଶ ବନ୍ଦ ହୋଇଗଲା ସତ୍ କିନ୍ତୁ ପୁଣିଥରେ ଦେଶର ଅନୁକୂଳ ବାତାବରଣ ଭିତରେ ତାହା ଆତ୍ମ ପ୍ରକାଶ କଲା ନବକଳେବରର ରୂପ ନେଇ । କାଳକ୍ରମେ ସେଇ ଦୈନିକ ପ୍ରଜାତନ୍ତ୍ରରେ ଓଡିଶାର ଲେଖକମାନଙ୍କୁ ଉତ୍ସାହିତ ଓ ଆକୃଷ୍ଟ କରିବା ପାଇଁ ସାହିତ୍ୟ ବିଭାଗ ଓ ଶିଶୁମାନଙ୍କ ପାଇଁ ମୀନା ବଜାର ସ୍ଥାନ ପାଇଥିଲା । କୁନି କୁନି ପିଲାଙ୍କ ହୃଦୟରେ ଗଳ୍ପ କବିତା ଇତ୍ୟାଦିର ପ୍ରେରଣା ସ୍ରୋତ ସୃଷ୍ଟି କରିବା ଥିଲା ତାଙ୍କ ମହତ୍ ଉଦ୍ଦେଶ୍ୟ । ସେଇ ମୀନାବଜାରରେ ଜୀବନର ପ୍ରଥମ ଲେଖା ପ୍ରକାଶ କରି ଓଡିଶାର ଅନେକ ଗାଳ୍ପିକ, କବିତା ଓ ପ୍ରାବନ୍ଧିକ ଇତ୍ୟାଦି ଘରେ ଘରେ ନିଜ ଲେଖନୀ ଚାଳନା କରି ହୋଇପାରିଛନ୍ତି ଜଣେ ଜଣେ ସଫଳ ସ୍ରଷ୍ଟା । ଝଙ୍କାର ପତ୍ରିକା ପ୍ରକାଶନ ଓ ବିଷୁବ ମିଳନ ଉତ୍ସବର ଆୟୋଜନ ଥିଲା ତାଙ୍କ ସାରସ୍ୱତ ଜୀବନର ଏକ ଅତୁଳନୀୟ ଅବଦାନ ।

ରାଜନୀତି, ସାହିତ୍ୟ, ଇତିହାସ ଓ ସାମ୍ବାଦିକତା ଭିତରେ ତାଙ୍କ ପ୍ରାଣ, ତାଙ୍କ ଚିନ୍ତା ଚେତନା, ତାଙ୍କ ହୃଦୟରେ ଅନେକ ଆଲୋଡନ ସୃଷ୍ଟି କରିଥିଲେ ମଧ୍ୟ ଅନ୍ୟଏକ ଦୁର୍ବାର ଅଭିଳାଷ ତାଙ୍କ ଜୀବନରେ ନୂଆ ଦିଗଟିଏ ସୃଷ୍ଟି କରିଥିଲା । ସେ ଇଚ୍ଛା ସେ ଆକାଂକ୍ଷା ହେଉଛି ଓଡିଶାର ସାଧୁସନ୍ଥଙ୍କ ଜୀବନୀ ସମ୍ପର୍କରେ ସାଧାରଣ ଜନତାଙ୍କୁ ଅବଗତ କରାଇବା । ସେଥିପାଇଁ ସେ ବମ୍ବେରେ ଗଭର୍ଣ୍ଣର ଥିବାବେଳେ 'ଉତ୍କଳ ସାହିତ୍ୟ ସମାଜକୁ'

୧୯୫୬ ମସିହା ଫେବୃଆରୀ ମାସରେ ପାଞ୍ଚଶହ ଟଙ୍କା ତତ୍କାଳୀନ ସଭାପତି ଚିନ୍ତାମଣି ଆଚାର୍ଯ୍ୟଙ୍କ ନିକଟକୁ ପଠାଇଥିଲେ। ସାହିତ୍ୟ ସମାଜର ସେତେବେଳର ସମ୍ପାଦକ ଶ୍ରୀ ନବକୁମାର ଦାସ ଓ ଗୌରୀ କୁମାର ବ୍ରହ୍ମ ପ୍ରାରମ୍ଭିକ ପରିକଳ୍ପନା ଓ ଆୟୋଜନ କରିଥିଲେ ଓଡିଶାର ଭକ୍ତଙ୍କ ଜୀବନୀ ଉପରେ ପୁସ୍ତକଟିଏ ପ୍ରକାଶ କରିବାକୁ। କିନ୍ତୁ ପରବର୍ତ୍ତୀ ପରିଚଳାନା କମିଟିର ସମ୍ପାଦକ ଜାନକୀ ବଲ୍ଲଭ ମହାନ୍ତି 'ଭକ୍ତମାଳା' ନାମକ ପୁସ୍ତକ ପ୍ରକାଶ କଲେ ୧୯୬୦ ମସିହା ଫେବୃଆରୀ ୧୫ ତାରିଖରେ। ଓଡିଆ ସାହିତ୍ୟର ଇତିହାସ ଅନେକ ଲେଖା ହୋଇଛି। ସେଗୁଡିକରେ ଲେଖକଙ୍କର ସାହିତ୍ୟ କୃତି ଓ କୃତିତ୍ୱ, ତା'ର ସଫଳତା ସାହିତ୍ୟରେ ବିଭିନ୍ନ ଯୁଗ ସମ୍ପର୍କରେ ମୁଖ୍ୟତ ଭାବେ ଆଲୋଚନା କରାଯାଇଥିଲା। ଯେହେତୁ ସାହିତ୍ୟର ଉଦ୍ଭବ ଓ କ୍ରମବିକାଶ ଉପରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ପାଇଛି। ତେଣୁ ସେଥିରେ ଲେଖକଙ୍କର ଜୀବନୀ ବିସ୍ତୃତ ଭାବେ ଆଲୋଚନା କରିବା ସମ୍ଭବ ହୋଇନାହିଁ। ଭାରତର ଅନ୍ୟାନ୍ୟ ରାଜ୍ୟରେ ସାଧୁସନ୍ଥଙ୍କ ଜୀବନୀ ସମ୍ପର୍କରେ ଯେତେ ପୁସ୍ତକ ପ୍ରକାଶ ପାଇଛି ତୂଳନାତ୍ମକଭାବେ ଓଡିଶାରେ ତାହା ସମ୍ଭବ ହୋଇପାରିନାହିଁ। ଆମ ସାହିତ୍ୟର ଏ ଅଭାବନୀୟ ଦିଗପ୍ରତି ମହତାବଙ୍କ ମନରେ ଗଭୀର କ୍ଷୋଭ ନିଶ୍ଚିତ ଭାବରେ ସୃଷ୍ଟି କରିଛନ୍ତି, ତେଣୁ ଏଇ ଦିଗରେ ଲେଖନୀ ଚାଳନା କରିବାକୁ ଯାଇ ସେ ଓଡିଶାର ସାଧୁସନ୍ଥଙ୍କ ଜୀବନୀ ଲେଖା ଆରମ୍ଭ କରିଛନ୍ତି ୧୯୭୭ ମସିହା ସେପ୍ଟେମ୍ବର ମାସ ଝଙ୍କାର ପତ୍ରିକାରେ। ପ୍ରଥମ ଲେଖା 'ରାୟ ରାମାନନ୍ଦ'ଙ୍କ ଜୀବନୀକୁ କେନ୍ଦ୍ରକରି ଲେଖନୀ ଚାଳନା କରିଛନ୍ତି। ଝଙ୍କାର ଅଗଷ୍ଟ ୧୯୭୮ ମସିହା ପର୍ଯ୍ୟନ୍ତ ସେ ଦଶଜଣ ସାଧୁସନ୍ଥଙ୍କ ଜୀବନୀ ଉପରେ ଆଲୋଚନା କରିଛନ୍ତି। ସେଇ ଲେଖାଗୁଡିକୁ ଏକତ୍ର କରି 'ଓଡିଶାର ସାଧୁସନ୍ଥ'ପୁସ୍ତକ ଆକାରରେ ପ୍ରଥମ ସଂସ୍କରଣ ୧୯୯୪ ମସିହାରେ ପ୍ରକାଶ ପାଇଛି ଭର୍ତ୍ତୃହରି ମହତାବଙ୍କ ଦ୍ୱାରା ପ୍ରଜାତନ୍ତ୍ର ପ୍ରେସରୁ ।

'ଭକ୍ତ ସାଲବେଗ' ହେଉଛନ୍ତି ସେହି ପୁସ୍ତକରେ ସ୍ଥାନ ପାଇଥିବା ଚତୁର୍ଥ ସାଧୁସନ୍ଥ ଯାହା ପ୍ରଥମେ ପ୍ରକାଶ ପାଇଥିଲା ଜାନୁଆରୀ ୧୯୭୮ ମସିହା ଝଙ୍କାର ପତ୍ରିକାରେ 'ଭକ୍ତି ହେଉଛି ଏକ ଚେତନା ଏବଂ ଚେତନା ହେଉଛି ଆତ୍ମିକ ସ୍ତରର ଏକ ସମଗ୍ର ସମ୍ବନ୍ଧ। ଭକ୍ତି ହେଉଛି ଏକ ଜୀବନ ସୃଷ୍ଟି। ସେହି ଦୃଷ୍ଟି ଜୀବନର ସକଳ ରାଗ ଏବଂ ଅନୁରାଗ ଗୁଡିକୁ ଅନୁସିକ୍ତ କରି ରହିଥାଏ। ଶ୍ରଦ୍ଧା ଏବଂ ଜୀବନର ଶ୍ରଦ୍ଧା ସ୍ଥାନ ହୃଦୟକୁ ହିଁ ଆପଣାର ସର୍ବମୂଳ ସାଧନା ତଥା ଅବଲମ୍ବନ ରୂପେ ଗ୍ରହଣ କରି ଯେଉଁ ଜୀବନ

ଆପଣାକୁ ଜଗତ ମଧ୍ୟରେ ରହିଥିବା ଯାବତୀୟ ସମ୍ପର୍କ ମଧ୍ୟରେ ପ୍ରେରିତ କରି ରହିଥାଏ, ତାହାହିଁ ହେଉଛି ଭକ୍ତି ଦ୍ୱାରା ଅନୁପ୍ରେରିତ ଏବଂ ଅନୁସକ୍ତ ଏକ ଜୀବନ ।' ଏହାହିଁ ହେଉଛି ମହତାବଙ୍କ ଜୀବନ ଓ ହୃଦୟର ଅନ୍ତଃସ୍ଥଳର ଚିର ପ୍ରବହମାନ ଅନ୍ତଃସ୍ରୋତର ଧାରାଟିଏ । ସେଥିପାଇଁ ଓଡିଶାର ସାଧୁସନ୍ଥ ଜୀବନୀ ଲେଖିବା ପାଇଁ ପ୍ରେରଣା ଓ ଦୁର୍ବାର ଇଚ୍ଛାଶକ୍ତିର ଏହା ହେଉଛି ମୂଳ ଉତ୍ସ ।

କଟକ ସହରର ଲାଲବାଗ - ଆଜି ଯେଉଁ ସ୍ଥାନରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ନାମରେ ନାମିତ ଶିଶୁ ଭବନ ଅବସ୍ଥାପି, ପୂର୍ବରୁ ତାହା ଥିଲା ରାଜଭବନ । କାଠଯୋଡି ନଦୀବନ୍ଧ କରରେ ରାଜଭବନର ପୁରୁଣା କୋଠା । ଆଜି ଅନେକ ଅଂଶ ଭଙ୍ଗାଯାଇ ନୂଆ କୋଠା ଘରମାନ ନିର୍ମାଣ ହୋଇଛି । ସେ ପୁରୁଣା ଉଦ୍ୟାନ ଆଜି ଆଉ ନାହିଁ । ମୋଗଲ ରାଜତ୍ୱ ସମୟରେ ସେଇଠି ଥିଲା ମୋଗଲ ନବାବଙ୍କ ବାସଗୃହ ଓ ଶାସନ କେନ୍ଦ୍ର । 'ପ୍ରାଚୀନ ସେ ଘର, ତିନିଶହ ବର୍ଷରୁ ଊର୍ଦ୍ଧ୍ୱ ତା'ର ଇତିହାସ । କେତେ ଷଡଯନ୍ତ୍ର, କେତେ ନିଷ୍ଠୁରତା ସେ ପ୍ରାସାଦ ସହ୍ୟକରି ଆସିଛି । ସେହିଦିନଠାରୁ ସେ ସ୍ଥାନ 'ଲାଲବେଗ୍'ନାମରେ ପରିଚିତ । ମୋଗଲ ରାଜତ୍ୱ ପରେ ବଙ୍ଗର ନବାବମାନଙ୍କ ଶାସନ ଲୁଣ୍ଠନ ଓ ଅତ୍ୟାଚାର ଥିଲା ସେ ସମୟର ଦେହ ସୁହା ଏକ ସାଧାରଣ ଘଟଣା । ଓଡିଶାର ଆରାଧ ଦେବତା ଜଗନ୍ନାଇ ମନ୍ଦିର ବାରମ୍ବାର ଲୁଣ୍ଠିତ ହୋଇଛି । ଓଡିଶାର ରାଜା ଏକାଧିକବାର ଲାଞ୍ଛିତ ଓ ଅପମାନିତ ହୋଇଛନ୍ତି । ଜଗନ୍ନାଥ ମନ୍ଦିରରେ ଅସଂଖ୍ୟ ଭକ୍ତଙ୍କ ଦ୍ୱାରା ଅର୍ପିତ ଧନ, ରାଜାଙ୍କର ଦାନ ପ୍ରଭୃତି ଧନ ସମ୍ପଦ ପ୍ରତି ଲୋଲୁପ ଦୃଷ୍ଟି ପଡିଛି ତତ୍କାଳୀନ ଶାସକମାନଙ୍କର । କଟକରୁ ପୁରୀ ଓ ଅନ୍ୟାନ୍ୟ ଅଞ୍ଚଳକୁ ଯାତାୟାତ କରିବାକୁ ଏକମାତ୍ର ବାହନ ଥିଲା ଅଶ୍ୱ । ପ୍ରଜା, ମନ୍ଦିର ଓ ରାଜ୍ୟକୁ ଲୁଣ୍ଠନ କରିବା ପାଇଁ ଅଶ୍ୱାରୋହି ସୈନ୍ୟମାନେ କଟକରୁ ବାହାରି ପିପିଲି, ଦାଣ୍ଡମୁକୁନ୍ଦପୁର, ସାକ୍ଷୀଗୋପାଳ ପ୍ରଭୃତି ସ୍ଥାନରେ କିଛି ସମୟ ବିଶ୍ରାମ ନେଇ ପୁଣି ଅଭିଯାନ ଆରମ୍ଭ କରନ୍ତି । କଥିତ ଅଛି ଏହି ବିଶ୍ରାମ ପାଇଁ ସେତେବେଳେ ଦାଣ୍ଡମୁକୁନ୍ଦପୁରରେ ସ୍ଥାୟୀ ଭାବରେ ଗୋଟିଏ ବିଶ୍ରାମ ଛାଉଣୀ ମଧ୍ୟ ଗଢି ଉଠିଥିଲା । ବାରମ୍ବାର ଅଶ୍ୱାରୋହୀ ସେମାନଙ୍କର ଅକଥନୀୟ ଅତ୍ୟାଚାର ଓ ଲୁଣ୍ଠନ ଫଳରେ ଭୟରେ ରାସ୍ତା ପାର୍ଶ୍ୱ ଗ୍ରାମ ମାନଙ୍କରୁ ଲୋକେ ସ୍ତ୍ରୀ ପିଲା ନେଇ ଦୂର ଗାଁ ମାନଙ୍କୁ ପଳାଇ ଯାଉଥିଲେ । ସୈନ୍ୟମାନଙ୍କର ଉନ୍ମତ୍ତ କାଣ୍ଡ- ଘର ଘର ଲୁଣ୍ଠନରେ ଅତିଷ୍ଠ ହୋଇଯାଉଥିଲେ ଗ୍ରାମବାସୀ । ଦିନେ ଗ୍ରାମବାସୀ ଶୁଣିଲେ ପୁଣିଏକ ଚମକପ୍ରଦ

କଥା। ଅଶ୍ୱାରୋହୀମାନେ କ୍ଷିପ୍ର ଗତିରେ ମାଡି ଆସୁଛନ୍ତି। ପବନ ବେଗରେ ଏ କଥା ପ୍ରଚାରିତ ହେବାକ୍ଷଣି ଦାଣ୍ଡମୁକୁନ୍ଦପୁରର ଗ୍ରାମବାସୀମାନେ ପଳାଇଗଲେ ଦୂର ଗ୍ରାମମାନଙ୍କୁ। ସେମାନଙ୍କ ଗୋରୁପଲ ଏଣେତେଣେ ଦୌଡୁଥାନ୍ତି ଆସନ୍ନ ବିପଦ ଆଶଙ୍କାରେ। ଏମିତିକି ଗ୍ରାମର କୁକୁରମାନେ ମଧ ଭୟରେ ଭୋକୁ ନଥାନ୍ତି। ଜନଶୂନ୍ୟ ଗ୍ରାମଟିରେ ଏକାକୀ ରହିଯାଇଛନ୍ତି ଜଣେ ବ୍ରାହ୍ମଣ ବିଧବା ଯୁବତୀ। କେହି ନାହାନ୍ତି- ସ୍ୱାମୀ ତ ଆର ପାରିରେ- ଶାଶୁ ଶ୍ୱଶୁର ମଧ ନିଜ ଜୀବନ ବଞ୍ଚାଇବାକୁ ଦୂରକୁ ଚାଲିଯାଇଛନ୍ତି। ବିଚାରି ହତଭାଗିନୀ ଚଳୁଥିଲା ଭିକ୍ଷାବୃତ୍ତିକରି ବା ବନ୍ଧୁବାନ୍ଧବଙ୍କ ଦୟା ବା ଅନୁଗ୍ରହ ଦ୍ୱାରା। ସେତେବେଳେ ଆମ ହିନ୍ଦୁ ସମାଜରେ ଜାତିଭେଦ ବିଧବାମାନଙ୍କ ପ୍ରତି ହେୟ ଭାବନାର ହୀନ ପରମ୍ପରା ଚଳି ଆସୁଥିଲା। ଯେଉଁଥିପାଇଁ ଏ ହୀନ କପାଳି ବିଧବାପ୍ରତି କେହି ସମ୍ବେଦନଶୀଳ ନଥିଲେ କିମ୍ବା ତାଙ୍କ ବିଷୟରେ ଚିନ୍ତା ମଧ କରି ନଥିଲେ। ନିସଙ୍ଗ ଓ ଏକାକୀଭାବେ ବିଚାରୀ ବିଧବା ଯୁବତୀଟି ଆଶାହୀନ ଓ ଭରସା ହୀନ ଭାବେ ଆଖିରୁ ଲୁହ ଗଡାଇ ରହିଯାଇଥିଲା। ସେ ଗ୍ରାମରେ ଥିବା ବିରାଟ ପୁଷ୍କରିଣୀ ନିକଟରେ ସୈନ୍ୟମାନେ ଛାଉଣି ପକାଇ ରହିଯାଇ ଘରେ ଘରେ ପଶି ଯାହା ଖାଦ୍ୟଦ୍ରବ୍ୟ ଥିଲା ତାକୁ ବୋହି ନେଇ ଯାଇ ନିଜର ଗ୍ରାସାଚ୍ଛାଦନର ସନ୍ତୋଷ ଜନକ ବ୍ୟବସ୍ଥା କରିଥିଲେ। ଶୁନ୍‌ଶାନ୍ ଗାଁ- ଦୁରାଚାରୀ ସୈନ୍ୟଙ୍କ କୋଳାହଳ ତା'ରି ଭିତରେ ବ୍ରାହ୍ମଣୀ କ'ଣ କରିବ କିଛି ଭାବିପାରୁ ନଥିଲା। ଘରୁ ବାହାରିବାକୁ ଡର- ପେଟର ଜ୍ୱାଳାକୁ ସମ୍ଭାଳିନେବାକୁ ବାଧ। କିନ୍ତୁ ସେ ସମୟରେ ନିୟମ ଥିଲା ବିଧବାମାନେ ପ୍ରାତଃ ସ୍ନାନ କରିବାକୁ ବାଧ। ଏ ବିଶ୍ୱାସ- ଏ ପ୍ରଥା ପ୍ରତିଟି ବିଧବାର ରକ୍ତ ମାଂସରେ ମିଶିଯାଇଥିଲା। ସେଥିରେପାଇଁ ପ୍ରାତଃ ସମୟ ଦେଖି ଚାରିଆଡକୁ ଭୟମିଶା ଦୃଷ୍ଟି ପକାଇ କବାଟ ଖୋଲି କେହି କୁଆଡେ ନାହାନ୍ତି ମନେ କରି ସ୍ନାନପାଇଁ ସେ ବାହାରି ପଡିଲା। କିଛି ବାଟ ଯାଇଛି ହଠାତ୍ ଦେଖିଲା ତା ସାମ୍ନାରେ ବିରାଟକାୟ କୁତ୍ସିତ ରୂପ ଆସି ବାଟ ଓଗାଳୁଛି। ମୁହୂର୍ତ୍ତକ ଭିତରେ ତା'ର ସବୁ ବୁଦ୍ଧି ହଜିଗଲା। କିଛି କହିବା ତ ଦୂରର କଥା ମୁହଁଟେକି ତାକୁ ଚାହିଁବି ପାରିଲାନି। ନିରୂପାୟ ହୋଇ ଆଖିରୁ ଲୁହ ଝରାଇ କେବଳ ଆକୁଳ ହୃଦୟରେ କେବଳ ଜଗନ୍ନାଥଙ୍କୁ ଡାକୁଥାଏ ସବୁ ବିପଦରୁ ତାକୁ ଉଦ୍ଧାର କରିବା ପାଇଁ। ଚିନ୍ତାକୁଳ ବିଷର୍ଣ୍ଣ ବଦନ, ମଳିନ ବସନ, କେବଳ ଶରୀରର କଟୀତକ ଅଂଶ ଆଛାଦାନ କରିଛି- ବକ୍ଷସ୍ଥଳ ଅର୍ଦ୍ଧାବୃତ୍ତ; କିନ୍ତୁ ସୌନ୍ଦର୍ଯ୍ୟ ଫୁଟି ଉଠୁଛି ଅବନତ ବଦନ ଓ ଅର୍ଦ୍ଧାବୃତ୍ତ ବକ୍ଷ ସ୍ଥଳରୁ। ଦୁର୍ଦାନ୍ତ ଯୁବକ ବିମୋହିତ ହୋଇ ଉଠିଲା

ତା'ର ଏହି ସୌନ୍ଦର୍ଯ୍ୟ ଦେଖି। ପାଶବିକ ପ୍ରବୃତ୍ତି ତାକୁ ଉନ୍ମାଦ କରିଦେଲା। ବିଧବା ହେଲା ତା' ବିଳାଶର ଶିକାର। ଧରିନେଇଗଲା ସେ କାପୁରୁଷ ଏ ନାରୀଟିକୁ ନିଜ ସଙ୍ଗରେ। ଅନ୍ୟ ସୈନ୍ୟମାନେ ଛାଉଣୀ ପରିତ୍ୟାଗ କରିବା ପୂର୍ବରୁ ସେ ଦୁର୍ଦାନ୍ତ ଯୁବକ ଏ ଯୁବତୀକୁ ଧରି କଟକ ଚାଲି ଆସିଲା। ଜଗନ୍ନାଥ ମନ୍ଦିର ଲୁଣ୍ଠନରୁ ଅଜସ୍ର ଅର୍ଥ ଉପାର୍ଜିତ ହୋଇଛି। ଅନେକ ଉକ୍ତଚ ପାଇଛି ରାଜାଙ୍କଠାରୁ। ଆଜି ସୈନ୍ୟମାନଙ୍କ ଲାଲ୍ ବେଶ ପ୍ରାସାଦ ଆନନ୍ଦ ମୁଖର। ସୈମାନଙ୍କ ଉନ୍ମତ୍ତ ହର୍ଷ କୋଳାହଳରେ ପ୍ରକମ୍ପିତ ସମଗ୍ର ଅଞ୍ଚଳ। କିନ୍ତୁ ଏ ଆନନ୍ଦ ଉତ୍ସବରେ ଯୋଗ ଦେଇନାହିଁ ଏ ସେ ଯୁବତୀ ହରଣକାରି ଯୁବକ ସୈନ୍ୟ, ସେ ନବାହୃତ ସୌନ୍ଦର୍ଯ୍ୟ ଉପଭୋଗରେ ବ୍ୟସ୍ତ। ଏହି ଯୁବକର ନାମ ଲାଲବେଗ। ଯୁବତୀର ନାମ କେଉଁଥିରେ ଉଲ୍ଲେଖ କରାଯାଇ ନାହିଁ। କିନ୍ତୁ ସେ ଥିଲେ ଜଣେ ଶକ୍ତି ଶାଳିନୀ ପରମା ଭକ୍ତି ପରାୟଣ ନାରୀ ଏଥିରେ ସନ୍ଦେହ ନାହିଁ। ଏ ଉଦ୍ଧତ କାମୁକ ଯୁବକର ପାଶବିକ ଅତ୍ୟାଚାରକୁ ସେ ସିନା ପ୍ରତିରୋଧ କରିପାରୁ ନଥିଲେ, କିନ୍ତୁ ତାଙ୍କ ମନକୁ, ତାଙ୍କ ହୃଦୟକୁ ସେ ସମର୍ପିତ କରି ନଥିଲେ କି ପରାଧୀନ ହେବାକୁ ଦେଇ ନଥିଲେ। ଲାଲବେଗଙ୍କ ଆଗ୍ରହ ଥିଲା କେବଳ ତାଙ୍କ ଶରୀରରେ। ମନ ଓ ହୃଦୟକୁ ଆୟତ କରିବା ପାଇଁ ତାଙ୍କର ସାମାନ୍ୟତମ ସ୍ପୃହା ନଥିଲା। ଏ ସମସ୍ତ ଅମାନୁସିକ ଅତ୍ୟାଚାର ଓ ନିର୍ଯାତନା ଭିତରେ ମଧ୍ୟ ଉପାୟଶୂନ୍ୟ ନାରୀଟି ମନରେ ଜଗନ୍ନାଥଙ୍କ ପ୍ରତି ଐକାନ୍ତିକ ଭକ୍ତିଭାବନା ଫଳରେ ତାଙ୍କ କୋଳ ମଣ୍ଡନ କଲା ଜଣେ ବିଶିଷ୍ଟ ଭକ୍ତ ଓ କବି। ସୁନ୍ଦର ସୁଠାମ ମାତାଙ୍କ ଶାରିରୀକ ସୌନ୍ଦର୍ଯ୍ୟ, ହୃଦୟର ନିଷ୍ଠା ଓ ଭକ୍ତିକୁ ସାଙ୍ଗରେ ନେଇ ପୁତ୍ର ସନ୍ତାନଟିଏ ଜନ୍ମଗ୍ରହଣ ପରେ ପିତା ପୁତ୍ରର ନାମ ରଖିଲେ ସାଲବେଗ। ପୁତ୍ର ଜନ୍ମ ପରେ ପରେ ଲାଲବେଗଙ୍କ ପ୍ରଣୟ କ୍ରମେ ଶିଥିଳ ହୋଇଗଲା। ଜଣେ କାମୁକ ପୁରୁଷ ପ୍ରେମ ଡୋରୀରେ ବନ୍ଧା ହୋଇପାରେ ନାହିଁ। ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସଙ୍ଗେ ଲାଲବେଗଙ୍କର ବ୍ରହ୍ମଣୀ ପ୍ରତି ଶାରୀରିକ ଆକର୍ଷଣ ମଧ୍ୟ କମିଗଲା ।

ଏ ନାରୀଟି ତା'ର ବାଲ୍ୟ ଓ ଯୌବନ ସମୟରେ ଗତାନୁଗତିକ ରୀତି ଅନୁସାରେ ସ୍ୱାମୀ, ଶାଶୁ ଓ ଶ୍ୱଶୁରଙ୍କଠାରୁ ଜଗନ୍ନାଥଙ୍କ ଅପାର କରୁଣା, ବିଷ୍ଣୁଙ୍କ କିର୍ତ୍ତି, ଶ୍ରୀକୃଷ୍ଣଙ୍କ ଲୀଳା ମାଧୁର୍ଯ୍ୟ ଓ ମହାଭାରତର କାହାଣୀ ଇତ୍ୟାଦି ପୁରାଣ କଥା ସବୁ ଶୁଣିଥିଲେ। ବ୍ରାହ୍ମଣ ଘରର ଝିଅ, ପୁଣି ବୋହୂ। ତେଣୁ ସେ ନିଜେ ମଧ୍ୟ ନେକ ପୋଥି ପୁରାଣ ପଢିଥିଲେ। ଜଗନ୍ନାଥ ଦାସଙ୍କ ଭାଗବତ, ମୃଗୁଣୀ ସ୍ତୁତି ଇତ୍ୟାଦି ଭକ୍ତି ସାହିତ୍ୟ ସେ

ଶୁଣିଥିଲେ ଓ ପାଠ କରିଥିବାର ବିଶ୍ୱାସ କରାଯାଏ। ବୈଧବ୍ୟ ପରେ ଏହି ପୁରାଣ ଶାସ୍ତ୍ର ପାଠ କରିବା ଥିଲା ତାଙ୍କ ଦୁଃଖଭରା ଜୀବନର ଏକମାତ୍ର ସାନ୍ତ୍ୱନାର ଉପାୟ। ତେଣୁ ସେ ତାଙ୍କର ପୁତ୍ରକୁ ପିଲାଟି ଦିନରୁ ପୁରାଣ ଶାସ୍ତ୍ରର ଗଳ୍ପ ଗୁଡିକ କହୁଥିଲେ। ତଥାପି ସାଲବେଗଙ୍କ ମନ ସେଥିରେ ସନ୍ତୁଷ୍ଟ ହୋଇ ନଥିଲା। ତାଙ୍କ ପାରିପାର୍ଶ୍ୱିକ ପରିସ୍ଥିତି ଦ୍ୱାରା ପିତାଙ୍କ ସୈନ୍ୟ ବୃତ୍ତିପ୍ରତି ସେ କ୍ରମଶଃ ଆକୃଷ୍ଟ ହୋଇ ଉଠିଥିଲେ। କାଳକ୍ରମେ ଶସ୍ତ୍ର ଚାଳନା, ଅଶ୍ୱାରୋହଣ ଇତ୍ୟାଦି ସୈନ୍ୟ ବୃତ୍ତିରେ ସେ ପାରଦର୍ଶୀ ହୋଇଗଲେ। ସାଲବେଗଙ୍କ ବାଲ୍ୟ ଓ କୈଶୋର ଦୁଇଟି ଧାରାରେ ଗତି କରିଥିଲା। ଗୋଟେ ପକ୍ଷରେ ପିତାଙ୍କ ସୈନ୍ୟବୃତ୍ତି ଓ ଅନ୍ୟ ପକ୍ଷରେ ଭକ୍ତି ପ୍ରବୃତ୍ତିର ଆକର୍ଷଣ। କୁହାଯାଏ ପୂର୍ବ ସଂସ୍କାର କାର୍ଯ୍ୟକାରୀ ହେବାପାଇଁ ବିଧିମଧ୍ୟ ଉପଯୁକ୍ତ ଅବସ୍ଥା ସୃଷ୍ଟି କରିଦିଏ। ସେ ଅବସ୍ଥା ଯେତେ ଯନ୍ତ୍ରଣା ଦାୟକ, ଦୁଃଖଭରା ହେଉ ପଛକେ ସାଧୁ ସନ୍ଥଙ୍କ ଜୀବନରେ ତାହା ଘଟିଥାଏ ।

ସାଲବେଗଙ୍କ ଜୀବନରେ ତାହାହିଁ ଘଟିଲା। ଥରେ ସେ ତାଙ୍କ ପିତାଙ୍କ ସହିତ ରାଜ୍ୟ ଲୁଣ୍ଠନରେ ଯାଇଥିଲେ ଅଶ୍ୱାରୋହୀ ସୈନ୍ୟ ଭାବରେ। ମନରେ ଅଦମ୍ୟ ଉତ୍ସାହ ଓ ଉଦ୍ଦିପନା ଜଣେ ସଫଳ ଅଶ୍ୱାରୋହୀ ହୋଇ ପାରିଥିବାରୁ। କିନ୍ତୁ ବାଟରେ ଯାଉ ଯାଉ ହଠାତ୍ ସେ ଅଶ୍ୱ ପିଠିରୁ ପଡିଯାଇ ଅତ୍ୟନ୍ତ ଗୁରୁତର ଭାବେ ଆହତ ହେଲେ, ହାତ ଗୋଡ ହାଡସବୁ ଭାଙ୍ଗିଗଲା। ମେରୁଦଣ୍ଡ ମଧ୍ୟ ଆଘାତ ପ୍ରାପ୍ତ ହେଲା। ସେ ଚେତାଶୂନ୍ୟ ହୋଇପଡି ରହିଲେ। ପିତା ଲାଲବେଗ ନିଜ ଅଶ୍ୱରେ ପୁତ୍ରକୁ ଆଣି ଘରେ ଛାଡି, ଚିକିତ୍ସାର ବ୍ୟବସ୍ଥା କଲେ। କିନ୍ତୁ ପୁତ୍ର ଆରୋଗ୍ୟ ହେବା ପରିବର୍ତ୍ତେ ଦିନକୁ ଦିନ ଅଧିକ ଗୁରୁତର ହେବାକୁ ଲାଗିଲା। ପୁତ୍ର ଯେ ଦିନେ ସୁସ୍ଥ ହୋଇ ବଞ୍ଚିବ ଏ ଆଶା ଲାଲବେଗଙ୍କର ରହିଲା ନାହିଁ। କ୍ରୂର-ଅମଣିଷ-କାମାତୁର ପିତା ସାଲବେଗ କିମ୍ବା ତାଙ୍କ ମାତାଙ୍କର କୌଣସି ଯତ୍ନ ନ ନେଇ ସେମାନଙ୍କୁ ଛାଡି ଚାଲିଗଲେ ।

ସେତେବେଳେ ପୁରୀରେ ବହୁ ମଠ ବାଡିରେ ଏହିପରି ନିରାଶ୍ରୟାମାନଙ୍କର ରହିବା ବ୍ୟବସ୍ଥା କରାଯାଇଥିଲା। ସେହି ଆଶାରେ ନିଃସହାୟ ମାତା ପୁତ୍ରକୁ ସାଙ୍ଗରେ ଧରି ଚାଲିଆସିଲେ। ପୁରୀରେ ରହିବା ପରଠାରୁ ଦିନକୁ ଦିନ ମାତାଙ୍କ ମନରେ ଭକ୍ତି ଭାବନା ଆହୁରି ବୃଦ୍ଧି ପାଇବାକୁ ଲାଗିଲା। ସେ ହୃଦୟଙ୍ଗମ କଲେ ଅନାଥିନୀକୁ ଦଇବ ନିଶ୍ଚୟ ସହାୟ ହେବ। ତାଙ୍କ ହୃଦୟରେ ଭକ୍ତି ଭାବନା ଆହୁରି ଦୃଢିଭୂତ ହେଲା- ବିଶ୍ୱାସ ବୃଦ୍ଧି ପାଇଲା। ସେ ପୁଣି ପତ୍ରକୁ ଭକ୍ତି ମାର୍ଗ ପ୍ରତି ଆକୃଷ୍ଟ କରାଇବା ପାଇଁ ତାଙ୍କ ଚେଷ୍ଟା



ଭୁବନେଶ୍ୱର ରାଜରାଣୀ ମନ୍ଦିର ବୁଲି ଦେଖୁଛନ୍ତି ନେହରୁ ଓ ମହତାବ (୧୯୫୭)

ଅବ୍ୟାହତ ରଖିଲେ । ମାତା ଭାଗବତ ଓ ଅନ୍ୟ ଭକ୍ତି ଶାସ୍ତ୍ରମାନ ସାଲବେଗଙ୍କୁ ଶୁଣାଉଥାନ୍ତି । ଏ ଯନ୍ତ୍ରଣାଦଗ୍ଧ ଶରୀର- ଅଦୂରରେ ଆସନ୍ନ ମୃତ୍ୟୁର କରାଳ ରୂପ ସେତେବେଳେ ସାଲବେଗଙ୍କୁ ବ୍ୟସ୍ତ ବିବ୍ରତ କରିଦେଉଥିଲା । ତାଙ୍କ ମନ-ହୃଦୟ ଓ ଭାବାବେଗରେ

କ୍ରମଶଃ ପରିବର୍ତ୍ତନ ଆସିଲା। ବଞ୍ଚିବାର ଆଶା ତ୍ୟାଗ କରିଥିବା ସାଲବେଗ ଏଥର ମନଧ୍ୟାନ ଦେଇ ମାତାଙ୍କଠାରୁ ପୁରାଣ କଥା- ଜଗନ୍ନାଥ-ଶ୍ରୀକୃଷ୍ଣ ଇତ୍ୟାଦି ଦେବତାମାନଙ୍କର ଐଶ୍ୱରୀୟ ଆଶୀର୍ବାଦ କଥାସବୁ ତାଙ୍କ ମନରେ ଗଭୀର ରେଖାପାତ ଆଣିଲା। ‘ ଏ ସଂସାରରେ କିଏ କାହାର ପିତା, କିଏ କାହାର ସ୍ୱାମୀ, କିଏ କାହାର ସ୍ତ୍ରୀ, କିଏ କାହାର ପୁତ୍ର ? ଏ ସମସ୍ତ ବନ୍ଧନ ଖାଲି ସାଂସାରିକ ମିଛ'ମୋହ ଓ ମାୟାର ବନ୍ଧନ।’ ଏହାର ପ୍ରମାଣ ଦେବାକୁ ଯାଇ ନିଜ ଜୀବନର ଯନ୍ତ୍ରଣା ଦଗ୍ଧ କଥା- ତାଙ୍କ ପିତାଙ୍କ ଦ୍ୱାରା ବଳାତ୍କାର ହୋଇ, ବାଧ ହୋଇ ତାଙ୍କ ସ୍ତ୍ରୀ ହୋଇ ରହିବା- ପୁତ୍ର ଜନ୍ମ- ଯୁଦ୍ଧରେ କ୍ଷତବିକ୍ଷତ ହୋଇ ପୁତ୍ର ଯନ୍ତ୍ରଣା ଭୋଗୁଥିବାବେଳେ ପିତା ତାଙ୍କୁ ଛାଡି ଚାଲିଯିବା ଇତ୍ୟାଦି ନିଜ ଜୀବନର ଏ ସମସ୍ତ ଅଙ୍ଗେ ଲିଭା ଦୁଃଖ ଉଦାହରଣ ଦେଲେ। ବୁଝାଇଦେଲେ ପୁତ୍ରକୁ ତେଣୁ ଏ ସଂସାରରେ ଏକମାତ୍ର ଭରସା ଓ ବିଶ୍ୱାସର ପାତ୍ର ହେଉଛନ୍ତି ଜଗନ୍ନାଥ ପତିତପାବନ। ସେ ହିଁ ସାକ୍ଷାତ ଶ୍ରୀକୃଷ୍ଣ, ସେ ହିଁ ବିଷ୍ଣୁ। ମଣିଷର ସମସ୍ତ ବିପଦ ସେ ଦୂର କରିଦିଅନ୍ତି। ସବୁ ଯନ୍ତ୍ରଣା- ସବୁକଷ୍ଟ- ସବୁ ଦୁଃଖରୁ ସେ ହିଁ ଉଦ୍ଧାର କରନ୍ତି। ତୁ ଯଦି ହୃଦୟରେ ତାଙ୍କୁ ଏକାଗ୍ର ଚିତ୍ତର ଧ୍ୟାନ କରିବୁ - ତାଙ୍କ ଉପରେ ଏକାନ୍ତ ଭାବେ ବିଶ୍ୱାସ ଓ ଭରସା ରଖିବୁ ତେବେ ସେ ତୋର ସମସ୍ତେ ରୋଗ ଯନ୍ତ୍ରଣା ନିଶ୍ଚୟ ମୁହୂର୍ତ୍ତକ ଭିତରେ ଦୂର କରି ଦେବେ। ମା'ଙ୍କ ମୁଖରୁ ସମସ୍ତ ବିଶ୍ୱାସଭରା ଉପଦେଶ ଶୁଣୁ ଶୁଣୁ ହଠାତ୍ ସେ ଅନୁଭବ କଲେ କିଏ ଯେପରି ତାଙ୍କ ମନ ଭିତରୁ କହୁଛି ‘ ଶୁଣ ସାଲବେଗ, ମାନ ମା'ଙ୍କ କଥା।’ ଏହାପରେ ଉତ୍ସାହିତ ହୋଇ ସେ ଆବେଗଭରା କଣ୍ଠରେ ମା'ଙ୍କୁ ପଚାରିଲେ ‘ ମନେ ମନେ ଯେଉଁ କୃଷ୍ଣଙ୍କୁ ଚିନ୍ତା କରିବି କିପରି ତାଙ୍କ ରୂପ ? ରୂପ ନ ଜାଣିଲେ ତ ମୁଁ ମନରେ ଭାବି ପାରିବି ନାହିଁ।’ ହଠାତ୍ ପୁତ୍ରଙ୍କ ମନ ଏ ଭକ୍ତି ଭାବନାର ଉଦ୍‌ବେଳନ- ଏ ଆବେଗ ଦେଖି ମାତାଙ୍କ ମନରେ ପ୍ରଶନ୍ନତା ଭରିଗଲା। ଗୋଟେ ପେଟିକୁ ସେ ଲୁଚାଇ ରଖିଥିଲେ। ସେ ପେଟିଟି ଖୋଲି ଲୁଗାତଳୁ ଶ୍ରୀକୃଷ୍ଣଙ୍କ ଏକ ଚିତ୍ରପଟ ବାହାର କଲେ। ଏ ପଟଚିତ୍ର ପୁରୀରେ ମିଳେ। ବିଧବା ହେବା ଦିନରୁ ସେ ପଟିକୁ ଆଗରେ ରଖି ତାଙ୍କୁ ଧ୍ୟାନ କରି ସକାଳେ ଓ ସଞ୍ଜରେ ଭାଗବତ ପାଠ କରନ୍ତି। ଅପହୃତ ହୋଇ ଆସିଲାବେଳେ ଲୁଗା ଭିତରେ ସେ ପଟି ଖଣ୍ଡକ ଲୁଚାଇ ଆଣି ସକାଳେ ଓ ସନ୍ଧ୍ୟାରେ ତାଙ୍କ ଦର୍ଶନ କରି ପୁଣି ଲୁଗା ଭିତରେ ତାଙ୍କୁ ଲୁଚାଇ ଦେଉଥିଲେ। ଆଜି ସେ ପଟିଟି କାଢି ସାଲବେଗଙ୍କୁ ଦେଖାଇଲେ। ବହୁ ପୁରାତନ ପଯି ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କ

କାରୁଣ୍ୟ ଭାବ ଓ ରୂପ ସମ୍ଭାର କଦାପି ମଳିନ ହୋଇ ନଥିଲା । ଶ୍ୟାମଳ ରୂପ, ହାତରେ ବଂଶୀ, ପାଦରେ ନୂପୁର, ତ୍ରିଭଙ୍ଗି ଠାଣିରେ ଦଣ୍ଡାୟମାନ, ମୁଖ୍ୟରେ ସ୍ମିତ ହାସ୍ୟ, ଚକ୍ଷୁରୁ ଆଶୀର୍ବାଦ ଅଭୟ ଝରି ପଡୁଥିଲା ପରି ମନେ ହେଉଥାଏ । ଏ ଅପୂର୍ବ ରୂପ ସଂଦର୍ଶନ କରି ସାଲବେଗ ଅଭିଭୂତ ହୋଇଗଲେ । ହୃଦୟରେ ଭକ୍ତିର ଉଦ୍‌ବେଳନ ସୃଷ୍ଟିହେଲା, ଆଖିରୁ ଝରିପଡିଲା ଧାର ଧାର ଅଶ୍ରୁ । ସାଲବେଗ ଅନୁଭବ କଲେ ଶରୀରର ବେଦନା-ଯନ୍ତ୍ରଣା ଆପେ ଆପେ ଉପସନ ହୋଇଯାଉଛି । ପଟିଟିକୁ ପୁଣି ମାତା ପୁଣି ପେଟି ଭିତରେ ଲୁଚାଇ ରଖିଲେ ଏହି ଆଶଙ୍କାରେ ଯେ, କାଳେ କେତେବେଳେ ସେ ମୁସଲ୍‌ମାନ୍ ଆସି ଛଡାଇ ନେବ । ପୁଅକୁ ସାବ୍‌ଧାନ୍ କରାଇଦେଲେ ଏକଥା କାହା ପାଖରେ ପ୍ରକାଶ ନ କରିବା ପାଇଁ । ସେଦିନ ସେହି ମୁହୂର୍ତ୍ତରୁ ସାଲବେଗଙ୍କ ହୃଦୟରେ- ଆତ୍ମାରେ ସେ ମୂର୍ତ୍ତିର ପ୍ରତିଛବି ଅଙ୍କିତ ହୋଇ ରହିଗଲା ସବୁଦିନ ପାଇଁ । ମନ ମଧ କେନ୍ଦ୍ରୀଭୂତ ହୋଇଗଲା ସେଇ ମୂର୍ତ୍ତିର ଶୋକ ପାସରା ଓ ଅପାସରା ରୂପ ପାଖରେ । ମାତା ମଧ ଆତୁର ହୃଦୟରେ କେବଳ ଗୋଟିଏ ପ୍ରାର୍ଥନା କଲେ, ହେ ପ୍ରଭୁ ରକ୍ଷାକର ମୋ ପୁତ୍ରକୁ, ଟାଣିନିଅ ତାକୁ ତୁମ କୋଳକୁ, ମୋର ପତିତ ଜୀବନ ଉଦ୍ଧାର ପାଉ ।

ମାତା ଓ ପୁତ୍ରଙ୍କର ଉତ୍ସର୍ଗୀକୃତ ଆତ୍ମାର ଏକାନ୍ତ ଅଭିଳାଶ, ଅନବରତ ଆକୁଳ ନିବେଦନ ଓ ଧ୍ୟାନ ଦିନେ ସଫଳ ହେଲା । ହାଠାତ୍ ଦିନେ ମଧ ରାତ୍ରୀରେ ସାଲବେଗ ସ୍ୱପ୍ନ ଦେଖିଲାଭଳି ମନେକଲେ, ଯେଉଁ ମୂର୍ତ୍ତିକୁ ସେ ଅବିରତ ଧ୍ୟାନ କରୁଛନ୍ତି- ଯାହାଙ୍କୁ ଦର୍ଶନ କରିବା ପାଇଁ ଚକ୍ଷୁରୁ ଅଶ୍ରୁଧାର ନିର୍ଗତ କରି ଧ୍ୟାନମଗ୍ନ ହେଉଛନ୍ତି, ସେଇ ମୂର୍ତ୍ତି ଶଶରୀରେ ତାଙ୍କ ମୁଣ୍ଡ ପାଖରେ ବସି ଆଶ୍ୱାସନା ଦେଇ କହୁଛନ୍ତି, ' ବତ୍ସ, ଦୁଃଖ କରନାହିଁ, ନିଅ ଏ ବିଭୂତି, ଦେହସାରା ବୋଳି ହୁଅ, ତୁମ ସବୁ କ୍ଷତ ଦୂରିଭୂତ ହୋଇଯିବ । ଅନ୍ୟ ସମସ୍ତ ବିକାର ଚାଲିଯିବ । ତୁମେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯିବ ।' ଭକ୍ତ ସାଲବେଗ ହାତରେ ସେ ବିଭୂତି ଗ୍ରହଣ କରି ଅର୍ଦ୍ଧ ନିଦ୍ରିତ ଅବସ୍ଥାରେ ଦେହସାରା ବୋଳିଦେଲେ । ହଠାତ୍ ଶରୀରର ସମସ୍ତ ଯନ୍ତ୍ରଣା ସମ୍ପୂର୍ଣ୍ଣ ଲୋପ ପାଇଯିବାରୁ କିଛି ସମୟ ପରେ ସେ ପୁଣି ଗଭୀର ନିଦରେ ଶୋଇପଡିଲେ । ସକାଳେ ଉଠି ଦେଖିଲେ ଯେ, କେଉଁଠି କ୍ଷତ ନାହିଁ, କେବଳ ଚିହ୍ନ ହିଁ ରହିଯାଇଛି, ହାତ ଗୋଡର ଭଙ୍ଗା ହାଡ ମଧ ଯୋଡି ହୋଇଯାଇଛି, ସେ ସମ୍ପୂର୍ଣ୍ଣ ସୁସ୍ଥ । ରାତିକ ଭିତରେ ପୁତ୍ର ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଯାଇଥିବାର ଜାଣିବା କ୍ଷଣି ମାତାଙ୍କ ଚକ୍ଷୁରୁ ଲୋତକ ଧାର ଧାର ହୋଇ ବୋହି

ପଡିଲା । ସେ ଜଗନ୍ନାଥ ସ୍ତୁତି କରିବାରେ ନିମଗ୍ନ ହୋଇଗଲେ । ସେତେବେଳେ ସାଲବେଗଙ୍କ ଚକ୍ଷୁରୁ ଲୋତକର ଧାର ବୋହିଯାଉଥାଏ। ସେ କାନ୍ଦି କାନ୍ଦି କରୁଛନ୍ତି- 'କାହିଁ ସେ ମୁର୍ତ୍ତି, ଦେଖିଲି ସ୍ୱପ୍ନରେ, କଥା ପଦେ ସୁଦ୍ଧା କହି ପାରିଲି ନାହିଁ। ମୁଁ ହତଭାଗ୍ୟ- ମୁଁ ନିଶ୍ଚୟ ଯାଇ ତାଙ୍କୁ ଦର୍ଶନ କରିବି, ସାରା ଜୀବନ ତାଙ୍କୁ ହିଁ ଜଣାଣ କରିବି। ସେଇ ହେବେ ମୋ ଜୀବନର ଧନ।' ଲୁହଝରା ଆଖିରେ ସେ ତତ୍‌କ୍ଷଣାତ୍ ନିଜ ପିନ୍ଧା ଲୁଗାକୁ ଚିରିଦେଇ କଲେ କୌପିନ। ଆର ଖଣ୍ଡକୁ ବହିର୍ବାସ କରି ସେ ବାହାରିଲେ ସନ୍ୟାସୀ ହୋଇ। ପୂର୍ଣ୍ଣ ପ୍ରାଣରେ ମାତା ଆଶୀର୍ବାଦ କଲେ। ନିଜେ ମଧ ସଂସାର ତ୍ୟାଗ କରି ସନ୍ୟାସିନୀ ହେଲେ ସାରା ଜୀବନ ।

'ସ୍ୱ ଅନୁଭୂତି ହିଁ ଜୀବନକୁ ବଦଳାଇ ଦିଏ, ଆଚରଣକୁ ବଦଳାଇ ଦିଏ, ବାସନାର ସମଗ୍ର ସଜ୍ଞା ଗୁଡିକୁ ବଦଳାଇ ଦିଏ। ସଂସାରରୁ ଆଉ କିଛି ପାଇବାର ଆକାଂକ୍ଷା ରଖେ ନାହିଁ, ଭାବରୁ ଅଭାବ ବୋଧର ପୂର୍ଣ୍ଣ କ୍ଷୟ ହୁଏ ଏବଂ ସନ୍ଥ ଆପଣାର ଜୀବନ କହିଲେ ଏକ ଉତ୍ସର୍ଗୀକୃତ ଜୀବନକୁ ହିଁ ବୁଝିବାକୁ ଆରମ୍ଭ କରେ। ସନ୍ଥଙ୍କର ଜୀବନ ସର୍ବଦା ଏକ ଆଧାତ୍ମିକ ସ୍ତରରେ ହିଁ ବିଚରଣ କରୁଥାଏ।'ସାଲବେଗଙ୍କ ଜୀବନରେ ଏହାହିଁ ଘଟିଥିଲା। ସାଲବେଗ ଆଉ ପୂର୍ବର ଉଦ୍ଧତ ଲୁଣ୍ଠନ ପ୍ରୟାସୀ ପିତାଙ୍କ ପୁତ୍ର ସାଲବେଗ ହୋଇ ରହିଲେ ନାହିଁ। ସେ ହୋଇଗଲେ ନିଷ୍ଠାପରାୟଣା- ଭକ୍ତିମତି ମାତାଙ୍କ ଆଶୀର୍ବାଦ ପ୍ରାପ୍ତ ଜଗନ୍ନାଥଙ୍କ ଏକାନ୍ତ ଅନୁରକ୍ତ ଭକ୍ତ। କ୍ରମେ କ୍ରମେ ଓଡିଆ ଭାଷାର ଭକ୍ତି ଶାସ୍ତ୍ର, ପୁରାଣରେ ସେ ହୋଇଗଲେ ପାରଦର୍ଶୀ। କବିତ୍ୱର ନିର୍ଝର ତାଙ୍କ ହୃଦୟ କନ୍ଦରରେ ଭକ୍ତିର ପ୍ରବାହମାନ ସ୍ରୋତଟିଏ ହୋଇଗଲା। ସେ ହୋଇଗଲେ ଓଡିଆ ସାହିତ୍ୟରେ ଜଣେ ଦରଦି ଭକ୍ତକବି। ନୀଳାଚଳରେ ତାଙ୍କ ଜୀବିକା ଥିଲା- ମାଧୁକରି ବୃତ୍ତି, କିନ୍ତୁ ଆମ ଧର୍ମର ନିର୍ଦ୍ଦୟ ପରମ୍ପରା ତାଙ୍କୁ ଜଗନ୍ନାଥ ମନ୍ଦିରରେ ପ୍ରବେଶ ଅଧିକାର ଦେଲେ ନାହିଁ। ତେଣୁ ସେ ଦେଉଳ ଦୁଆରେ ଖଞ୍ଜଣି ବଜାଇ ମର୍ମସ୍ପର୍ଶୀ ଭଜନ- ଜଣାଣ ଗାନ କରିବାକୁ ଲାଗିଲେ। ଆନନ୍ଦ ସାଗରରେ ନିମଗ୍ନ ହୋଇ ରହିବାର ଏହାହିଁ ଥିଲା ତାଙ୍କର ଏକମାତ୍ର ପଥ ।

ଡଃ. ମହତାବ ସାଲବେଗଙ୍କ ଜଣାଣ- ' ଆହେ ନୀଳଶୈଳ ପ୍ରବଳ ମତ ବାରଣ/ ମୋ ଆରତ ନଳିନୀ ବନକୁ କର ଦଳନ', ଭଜନଟିର ସମଗ୍ର ଅଶଂକୁ ଉଲ୍ଲେଖ କରି ଏ ପ୍ରବନ୍ଧଟି ଆଲୋଚନା କରିଛନ୍ତି। ଶହଶହ ବର୍ଷ ଧରି ଏ ଭଜନଟି ବୋଲା ହୋଇ ଆସୁଛି

ଅସଂଖ୍ୟ ଜନତାଙ୍କ ଦ୍ୱାରା । ସେ ଉଲ୍ଲେଖ କରିଛନ୍ତି- ' ଏ ଭଜନ ଖଞ୍ଜଣି ବାଦ୍ୟସହ ବୋଲା ହୁଏ । ମାଲବାହୀ ନୌକାରେ, ସନ୍ଧ୍ୟାର କିଛି କ୍ଷଣ ପରେ, ଶାନ୍ତ ନାବିକମାନଙ୍କ ସୁମଧୁର କଣ୍ଠସ୍ୱରରେ । ବୋଲାହୁଏ ଏ ଭଜନ ସେହି ଖଞ୍ଜଣି ସାହାଯ୍ୟରେ ପୁରୀ ବଡଦାଣ୍ଡ ପାର୍ଶ୍ୱର ମଠରେ, ବାରନ୍ଦାରେ, ଜଗନ୍ନାଥ ଦର୍ଶନ କରିବାକୁ ଆସିଥିବା ଭକ୍ତମାନଙ୍କ କଣ୍ଠରେ ।' ଏ ଭଜନରେ ଭକ୍ତ ଜଣଙ୍କ ଆତୁର ହୃଦୟର ଆବେଗଭରା ପରିପ୍ରକାଶ ହିଁ ପ୍ରତିଟି ହୃଦୟକୁ ଆକୃଷ୍ଟ କରେ- ପ୍ରାଣରେ ଭକ୍ତିଭାବନା ସଞ୍ଚାରିତ କରେ । ଯଦି ସାଲବେଗ କେବଳ ଭକ୍ତଟିଏ ହୋଇଥାନ୍ତେ ତେବେ ଓଡିଆ ଜନମାନସରେ କେବେଠାରୁ ତାଙ୍କ ନାମ ବିସ୍ମୃତି ଗର୍ଭରେ ଲୀନ ହୋଇ ସାରନ୍ତାଣି । ଯେହେତୁ ସେ ଅନେକ ଭଜନ ଓ ଜଣାଣର ସ୍ରଷ୍ଟା ଓ ପ୍ରତି କବିତାର ପ୍ରତିଟି ଧାଡିରେ ତାଙ୍କ ଅନ୍ତରର ଅନ୍ତରାଳରେ ଦୁଃଖ ବେଦନା ଓ ଭକ୍ତିର ଯେଉଁ ଆକୁଳ ନିବେଦନ ପ୍ରକାଶ ପାଇଛି ସେଥିପାଇଁ ଆଜି ସେ ସାଧୁସନ୍ଥ ଭାବରେ ଯେମିତି ସମ୍ମାନିତ, ଅମର ଲେଖନୀର ହୃଦୟଭରା କବିତା ପାଇଁ ମଧ ଚୀରଦିନ ଏ ଜାତିର ମନସ ପଟରେ ସ୍ମରଣୀୟ ହୋଇ ରହିଛନ୍ତି । ତାଙ୍କପରି ଆଉ କେଉଁ ଭକ୍ତକବି ଜୀବନର ଶେଷ ଇଚ୍ଛା- ସାଧକ ଜୀବନର ଶ୍ରେଷ୍ଠ ସିଦ୍ଧି ପାଇବାକୁ ନିବେଦନ କରି ଲେଖିଛନ୍ତି- ' ଜଗନ୍ନାଥ ହେ କିଛି ମାଗୁନାହିଁ ତୋତେ/ଧନ ମାଗୁନାହିଁ ଜନ ମାଗୁନାହିଁ / ମାଗୁଛି ସରଧା ବାଲିରୁ ହାତେ ।'

' ଶ୍ରୀକ୍ଷେତ୍ରରେ ଜଗନ ହରିଦାସଙ୍କ ସମାଧି ଅଛି ମାତ୍ର ସାଲବେଗଙ୍କର ନଥିଲା । ଡଃ. ହରେକୃଷ୍ଣ ମହତାବଙ୍କ ପରାମର୍ଶ କ୍ରମେ ଭଦ୍ରକର ବିଶିଷ୍ଟ ଜମିଦାର ରାୟ ବାହାଦୁର ଭାସ୍କରଚନ୍ଦ୍ର ମହାପାତ୍ର ୧୯୨୭ ଖ୍ରୀଷ୍ଟାବ୍ଦରେ ସାଲବେଗଙ୍କର ଏକ ରମଣୀୟ ସମାଧି ପୀଠ ନିର୍ମାଣ କରିଥିଲେ । ରଥଯାତ୍ରା ସମୟରେ ସାଲବେଗଙ୍କ ସମାଧି ପୀଠ ପାଖରେ ଜଗନ୍ନାଥ ରଥ କିଛି ସମୟ ପାଇଁ ବନ୍ଦ୍ ହୋଇଯାଏ ବୋଲି କଥିତ ଅଛି ।' ବଞ୍ଚିଥିବା ବେଳେ ଯାହାଙ୍କୁ ମନ୍ଦରରେ ଦର୍ଶନ କରିପାରି ନଥିଲେ ନିଜେ ଜଗନ୍ନାଥ ଜଦି ଆଜି ତାଙ୍କୁ ଦର୍ଶନ ଦେଉଛନ୍ତି ତେବେ ଏହା ଯବନ କବି ସାଲବେଗ ତାଙ୍କପାଇଁ ଶର୍ବଶ୍ରେଷ୍ଠ ଫଳପ୍ରାପ୍ତି ବୋଲି ଭାବିବାକୁ ହେବ ।

ଅବସରପ୍ରାପ୍ତ ପ୍ରାଧାପକ ଡଗରପଡା- ବନ୍ଧ ବାଶେଳୀ
ଚାନ୍ଦିନୀ ଚୌକ- କଟକ



# ସ୍ମୃତି ବଳୟରେ ପୂଜ୍ୟ ଡକ୍ଟର ମହତାବ

ବିଷ୍ଣୁଚରଣ ଜେନା

ମୃତ୍ୟୁ ପରେ ଜୀବ କେଉଁଠିକି ଯାଏ ? ତାର ପଞ୍ଚମହାଭୂତରେ ନିର୍ମିତ ଜଡ଼ ଶରୀର ପଞ୍ଚମହାଭୂତରେ ମିଶିଗଲା ପରେ ତାର ଚେତନ ସତ୍ତା ମହାଶୂନ୍ୟରେ ମିଳେଇ ଯାଏ ବା ଅନ୍ୟ କେଉଁଠି ଜନ୍ମ ଗ୍ରହଣ କରେ ? ଏହା ଏକ ବିବାଦୀୟ ପ୍ରଶ୍ନ ବିବାଦୀୟ ଏଥିପାଇଁ ଯେ , ଏହାର କୌଣସି ପ୍ରତ୍ୟକ୍ଷ ପ୍ରମାଣ ଉପଲବ୍ଧ ହୁଏନାହିଁ, ମାତ୍ର ଆମ ଦର୍ଶନ ଅନୁଯାୟୀ ଏକଥା ସତ୍ୟ, ମନୁଷ୍ୟର ଜନ୍ମ ଯେମିତି ଅଛି, ମୃତ୍ୟୁ ସେମିତି ଅଛି ହେଲେ ମଣିଷ ଭିତରେ ଥିବା ଆତ୍ମା କେବେ ବଦଳିବ ନାହିଁ । କେବଳ ବଦଳେ ତାର ଘଟ ।

ଏଇଠି କିଛି ହଜି ଯାଏ ନାହିଁ , କେବଳ ମଲାଟ ବଦଳାଏ ପୋଥି, ରାତି ଯେମିତି ଚାନ୍ଦିନୀ ପାରାହେବ ବଦଳାଇ, ସକାଳେ ପିନ୍ଧେ ଖରାର ଧୋତି ମୃତ୍ୟୁପରେ ପ୍ରାପ୍ତ ଜୀବନକୁ ପୁନର୍ଜନ୍ମ କୁହାଯାଏ । ଏହା କିନ୍ତୁ ନିଜର କୃତକର୍ମ ଉପରେ ଆଧାରିତ ହୋଇଥାଏ । ସାଧାରଣ ମତରେ ମୃତ୍ୟୁପରେ ଜୀବର ଦୁଇଟି ଗତି ହୋଇଥାଏ । ପ୍ରଥମତଃ ଜୀବ ଜନ୍ମ ଓ ମୃତ୍ୟୁ ଚକ୍ରରୁ ମୁକ୍ତ ହୋଇଯାଏ । ଦ୍ୱିତୀୟରେ ଜୀବ ନିଜର କର୍ମ ଅନୁସାରେ ସ୍ୱର୍ଗ ବା ନର୍କ ଲୋକରେ ଭୋଗାଭୋଗ ନୁସାରି ପୁନଶ୍ଚ ଆବଶ୍ୟକ ଅନୁଯାୟୀ ଭିନ୍ନ ରୂପ ଧରି ଆସେ । ନବଓଡ଼ିଶାର ନିର୍ମାତା ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ଆତ୍ମାର ମହିମା ବିଶାଳ, ଶକ୍ତି ଅପରିସୀମା ଥିଲା । ତେଣୁ ତାଙ୍କର ଆତ୍ମା ସ୍ୱର୍ଗ ଲୋକକୁ ଯାଇ ପୁନର୍ବାର ଫେରି ଆସିବାର ବିଶ୍ୱାସ କରାଯାଇ ପାରେ । ଭବସାଗରର ଅଜ୍ଞାନ ଅନ୍ଧକାରରେ ସେ ନିଜର ମାର୍ଗ ଚିହ୍ନିବାରେ ଅସମର୍ଥ

ନହେବା ଲାଗି ଏକ ଆଲ୍ଲାଉଦ୍ଦିନଦୀପ ଦେଇ ପଠାଇଥିଲେ । ସେହି ଦୀପର ନାମ ଜ୍ଞାନ । ବିବେକ ସାହାର୍ଯ୍ୟରେ ସେ ମହାଶୟ ତାଙ୍କ ମାର୍ଗ ଦେଖି ପାରିଥିଲେ ଓ ଦେଶ , ଜାତି ତଥା ନିଜ ପାଇଁ କ'ଣ କରିବାକୁ ହେବ ତାହାଜାଣି ପାରିଥିଲେ । ସେ



ଓ୍ୱାର୍ଦ୍ଧା ଗାନ୍ଧୀ ସେବା ଗ୍ରାମରେ ସୀମାନ୍ତ ଗାନ୍ଧୀଙ୍କ ସହ ମହତାବ ( ୧୯୪୧ )

ଆଲୋକ ଆଡ଼କୁ ଚାଲିଥିଲେ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ସତକର୍ମ ଓ ମଦଭାବନାରେ ଉପଯୋଗ କରିଥିଲେ ।

୧୮୯୯ ମସିହା ନଭେମ୍ବର ୨୧ ତାରିଖରେ ଅଗରପଡ଼ାର ଏକ ଜମିଦାର ପରିବାରେ ଡଃ ମହତାବଙ୍କ ଜନ୍ମଗ୍ରହଣ କରିଥିଲେ । ରାଜବଂଶ ପ୍ରତି ତାଙ୍କର ସେତେଟା ରାଜକୀୟ ମମତା ନଥିଲା । ଚାହିଁଥିଲେ ମହଲ ବିଳାସ ଜୀବନ ବିତାଇପାରି ଥାନ୍ତେ । ଚାହିଁଥିଲେ ବହୁ ଅର୍ଥର ମାଲିକ ହୋଇ ଏକ ମହାନ ସୌଖୀନ ଜୀବନ ଅତିବାହିତ କରିପାରିଥାନ୍ତେ ହେଲେ ତାଙ୍କ ଜୀବନ ଏକ ଭିନ୍ନ ଉପାଦାନରେ ଗଢାହୋଇଥିଲା । ତାହା ଆଜି ପର୍ଯ୍ୟନ୍ତ ଗବେଷକମାନେ ସଠିକ ଭାବରେ କହିପାରୁନାହାଁନ୍ତି । ବିବାହରେ ପରେ ସମସ୍ତେ ପତ୍ନୀ ସୁଖ ପାଇଁ ପାଗଳ ହୁଅନ୍ତି । କିନ୍ତୁ ପତ୍ନୀଙ୍କୁ ଆୟୁକରି ପୂଜ୍ୟ ମହତାବ ଅଗରପଡ଼ା ରାଜପ୍ରସାଦରୁ ଅଜସ୍ର ଧନ ସମ୍ପତ୍ତି ଆଣି ଦୁଃଖୀ ରଖିଙ୍କ ଦୁର୍ଦ୍ଦିନରେ ଦେବଦୂତ ଭଳି ସେମାନଙ୍କର ସହାୟକ ହେଉଥିଲେ । ମାତ୍ର ୨୧ ବର୍ଷ ବୟସରୁ ପତ୍ନୀ ସୁଖକୁ ପରିତ୍ୟାଗ କରି ଭାରତର ସ୍ୱାଧିନତା ପାଇଁ ସେ ପଦାକୁ ବାହାରି ଆସିଥିଲେ ।

ମହାତ୍ମା ଗାନ୍ଧୀଙ୍କୁ ସେ ଭଗବାନ ବୋଲି ବିଚାରକରି ତାଙ୍କର ପ୍ରେରଣାରେ ଏ ଦେଶ ଓ ଜାତିକୁ ସ୍ୱାବଲମ୍ବୀ କରିବା ନିମନ୍ତେ ନିଜର ଛାଡ଼ି ହାଡ଼କୁ ବଜ୍ର କରି ବିଦେଶୀ ସଭ୍ୟତାର ପତନ ପାଇଁ ଗଭିର ତ୍ୟାଗ ଓ ସାଧନା କରିଥିଲେ। ଭାରତର ସ୍ୱାଧିନତା ପାଇଁ ସେ ବାରମ୍ବାର କାରାବରଣ କରିଥିଲେ । ଏହା ସହିତ ଓଡ଼ିଶା ଉନ୍ନତି ପାଇଁ ଅହରହ ଉଦ୍ୟମ ଚଳାଇଥିଲେ ।ସ୍ୱାଧିନତା ପରେ ପଣ୍ଡିତ ଜବାହାରଲାଲ ନେହେରୁ ଓ ସର୍ଦ୍ଦାର ବଲ୍ଲଭ ଭାଇପଟେଲଙ୍କର ସହ ହାତ ମିଳାଇ ଭାରତର ଖଣ୍ଡ ଖଣ୍ଡ ହୋଇ ରହିଥିବା ଦେଶୀୟ ରାଜ୍ୟ ଗୁଡ଼ିକୁ ଭାରତରେ ମିଶାଇ ଏକ ବୃହତ୍ତ ଭାରତ ଗଠନର ଚେଷ୍ଟାକୁ ସଫଳ ରୂପାୟନ ଦେଇଥିଲେ ।

ତାଙ୍କ ହାତରେ ପଡ଼ିଥିଲା ଓଡ଼ିଶାର ଶାସକ ଦାୟିତ୍ୱ । ମୁଖ୍ୟମନ୍ତ୍ରୀ ଭାବେ ଶାସନର ବିନ୍ଧାଣୀ ପୂଜ୍ୟ ମହତାବ ଓଡ଼ିଶାର ବହୁ ଗଠନ ମୂଳକ କାର୍ଯ୍ୟ କରାଇଛନ୍ତି । ଭୁବନେଶ୍ୱରରେ ରାଜଧାନୀ, ବାଣୀ ବିହାର ବିଶ୍ୱବିଦ୍ୟାଳୟ, ହିରାକୁଦ ନଦୀବନ୍ଧ ଯୋଜନା, ବିଦ୍ୟୁତ୍‌କାରଖାନା ପ୍ରଭୃତି ବହୁ କାର୍ଯ୍ୟ କରି ଓଡ଼ିଶାର ଇତିହାସ ସୃଷ୍ଟି

କରିଛନ୍ତି । ଆଧୁନିକ ଓଡ଼ିଶାର ନିର୍ମାଣ ଚାରିଦିନ ପାଇଁ ଅମର ହୋଇ ରହିବେ । ଆମ ଜାତି ଓ ଦେଶର ଜଣେ ପ୍ରବାଦ ପୁରୁଷ ଥିଲେ । ଓଡ଼ିଶା ରାଜନୀତି, ଶିକ୍ଷା, ଅର୍ଥନୈତିକ ବିକାଶ, ସାହିତ୍ୟ, ସଂସ୍କୃତି, ସାମ୍ବାଦିକତା ଓଡ଼ିଶାର ଗଣତାନ୍ତ୍ରିକ ଚେତନାର ବିକାଶ କରାଇବାରେ ଡଃ ମହତାବ ହିଁ ଯଥାର୍ଥ ପଥପ୍ରଦର୍ଶକ କହିଲେ ଅତ୍ୟୁକ୍ତି ହେବନାହିଁ ।

ପୂଜ୍ୟ ମହତାବଙ୍କ ଘଟଣା ବହୁଳ ଜୀବନ ମଧ୍ୟରେ ସେ ଓଡ଼ିଶାର ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ, ବମ୍ବେର ରାଜ୍ୟପାଳ ଭାବେ ନିଯୁକ୍ତି ହୋଇ· ବହୁ କାର୍ଯ୍ୟ କରିଯାଇଛନ୍ତି । ସ୍ୱାଧିନତା ସଂଗ୍ରାମ ବ୍ୟତୀତ ୧୯୭୫ ମସିହାରେ ଜରୁରୀ ପରିସ୍ଥିତିରେ ଗିରଫ ହୋଇ ସେ ୧୮ ମାସ ସାଧାରଣ ବନ୍ଦୀଭାବେ ଜୀବନ ବିତାଇଥିଲେ । ଦେଶର ଜଣେ ମହାନ ସ୍ୱାଧିନତା ସଂଗ୍ରାମୀ , ଗାନ୍ଧୀବାଦର ପ୍ରବକ୍ତା, ବିଚକ୍ଷଣ ରାଜନୀତିଜ୍ଞ, ଯଶସ୍ୱୀ ସାହିତ୍ୟକ, ଐତିହାସିକ ଓ ନିର୍ଭୀକ ସାମ୍ବାଦିକ ଭାବରେ ସେ ରାଜ୍ୟ, ଦେଶ ଓ ବିଦେଶରେ ସମ୍ମାନ ଲାଭ କରୁଛନ୍ତି ଓ କରୁଥିବେ । ତାଙ୍କର ଶେଷ ଜୀବନରେ ସ୍ୱାଧିନତା ଆନ୍ଦୋଳନରେ ପ୍ରାଣକେନ୍ଦ୍ର ସ୍ୱରାଜ ଆଶ୍ରମ ଦିଗରେ ଧ୍ୟାନ ଦେଇଥିଲେ । ସ୍ୱରାଜ ଆଶ୍ରମ ନବୀକରଣ କରାଯାଇ ସଂଗ୍ରାମୀମାନଙ୍କର ସ୍ମୃତି ରକ୍ଷାକରାଇବାର ପ୍ରଚେଷ୍ଟା ଚଳାଇଥିଲେ ଯାହାଫଳରେ ସଂଗ୍ରାମୀ ଦାୟାଦମାନେ ଏହାକୁ ଚିରଦିନ ସ୍ମରଣ ରଖିବେ । ଯୁଗପୁରୁଷ ଡଃ ମହତାବଙ୍କ ଦେହାନ୍ତ ୧୯୮୩ ଜାନୁୟାରୀ ୨ ତାରିଖରେ ହୋଇଛି ସତ ହେଲେ ସେ ଅମର ।

*ରାମକୃଷ୍ଣ କୁଟୀର, କଟକ*



# ସାରସ୍ୱତ ଯାତ୍ରୀ ଡ.ମହତାବ

## ଅପୂର୍ବ ରଞ୍ଜନ ରାୟ

ଯାତ୍ରା ପଥରେ ଯେକୌଣସି ଯାତ୍ରୀର ଲକ୍ଷ୍ୟ ମହତ ଥିଲେ ଏବଂ ଯାତ୍ରାର ଆଭିମୁଖ୍ୟ ସ୍ପଷ୍ଟ ହୋଇଥିଲେ, ଯାତ୍ରୀର ଯାତ୍ରା ବିଫଳ ହୁଏନାହିଁ । ଏଥିପାଇଁ ନିଶ୍ଚିତ ଭାବରେ ସେହି ପଥ ସହିତ ଯାତ୍ରୀକୁ ପରିଚିତ ହେବାକୁ ପଡ଼ିଥାଏ । ଯଦି ଯାତ୍ରାର ଲକ୍ଷ୍ୟ ସୁଦୂର ପ୍ରସାରୀ ହୋଇନଥାଏ ଏବଂ ପଥ ଅସ୍ପଷ୍ଟ ହୋଇଥାଏ, ଯାତ୍ରୀ କେବେ ତା' ଯାତ୍ରା ପଥରେ କୁସୁମର ସନ୍ଧାନ ପାଇପାରେନାହିଁ । ଜନନାୟକ ଡ. ହରେକୃଷ୍ଣ ମହତାବଙ୍କ ସକଳ ଯାତ୍ରା ପରି ସାରସ୍ୱତ ଯାତ୍ରାର ଆଭିମୁଖ୍ୟ ମଧ୍ୟ ସ୍ପଷ୍ଟ ହୋଇଥିଲା । ସେଥିପାଇଁ ସାରସ୍ୱତ ଯାତ୍ରାରେ ସେ ସଫଳ ଯାତ୍ରୀଟିଏ ହେବା ଲାଗି ଦୃଢ଼ମନା ହୋଇ ସେକ୍ଷେତ୍ରରେ ସାର୍ଥକତା ହାସଲ କରିଥିଲେ । ଯେକୌଣସି କାର୍ଯ୍ୟରେ ମନୋବଳ ଦୃଢ଼ ରହିଲେ, ସଂଗଠକ ଆଗକୁ ଯାଇପାରେ । ଗୋଟିକ ପରେ ଗୋଟିଏ ପାହାଚ ଅତିକ୍ରମ କରିବା ଲାଗି ଧୈର୍ଯ୍ୟ ଓ ନିଷ୍ଠାପରତା ରହିପାରିଲେ, ସେହି କାର୍ଯ୍ୟ ସଫଳ ହୁଏ, ଏହା ସାର୍ଥକନାମା ସଂଗଠକଙ୍କୁ ଜଣାଥାଏ । ଡ. ହରେକୃଷ୍ଣ ମହତାବ ପ୍ରତି କ୍ଷେତ୍ରରେ ଥିଲେ ଆଶାବାଦୀ । ଏହି ଆଶା ହିଁ ତାଙ୍କୁ ଦୂରକୁ ନେଇପାରୁଥିଲା ଓ ସଫଳତାର ଶିଖରରେ ପହଞ୍ଚାଇ ପାରୁଥିଲା । ସାହିତ୍ୟ ପତ୍ରିକା 'ଝଙ୍କାର' ତାଙ୍କ ଦ୍ୱାରା ପ୍ରତିଷ୍ଠିତ ହେଲା । ଏହା ୧୯୪୯ ମସିହାରେ ପ୍ରକାଶ ପାଇଲା । ଏହାକୁ କେନ୍ଦ୍ରକରି ୧୯୫୦ ମସିହାରୁ ଆରମ୍ଭ ହେଲା 'ବିଷୁବ ମିଳନ' । ସେହି ପ୍ରଥମ ଅଧିବେଶନରେ ସ୍ୱାଗତ ଭାଷଣ ପ୍ରସଙ୍ଗରେ ଡ. ମହତାବ ଲେଖକ ଲେଖିକାମାନଙ୍କ ଉପସ୍ଥିତିରେ ପ୍ରକାଶ କରିଥିଲେ - "'ଝଙ୍କାର' ପାହୁଲାଟିଏ ମୂଳଧନ

ଘେନି ଆରମ୍ଭ କରାଯାଇନାହିଁ । କାହାରି ଦାନ ବା ଦୟା 'ଝଙ୍କାର' କେବେ ଆଶା କରିନାହିଁ । କିନ୍ତୁ ସମସ୍ତଙ୍କର ଉତ୍ସାହ ଏହା ବରଣ କରିଛି ।"

ଆରମ୍ଭରୁ ଡ. ମହତାବ ଲେଖକ ଲେଖିକାମାନଙ୍କୁ ପୁରସ୍କୃତ କରିବା ପାଇଁ ମନସ୍ଥ କଲେ । ଏଥିଲାଗି ଓଡ଼ିଶାର ବରେଣ୍ୟ କବି ଡ. ମାୟାଧର ମାନସିଂହଙ୍କର ମତାମତ ଲୋଡ଼ିଲେ । ସେ ଏ ପ୍ରସଙ୍ଗରେ ନିଜର ମତ ଦେଇ ଲେଖିଥିଲେ - "ପୁରସ୍କାର ପ୍ରଶ୍ନ ବର୍ତ୍ତମାନ ଉଠାନଯାଉ । ପୁରସ୍କାରର ପ୍ରଶ୍ନ ଉଠେଇଲେ ଇ ପରେ ପରେ ଧୂଳି ପଟଳ ପରି ଉଠିବ ସଂକୀର୍ଣ୍ଣ ଦଳାଦଳି, ଈର୍ଷା ଦୁରଭିସନ୍ଧିର କନ୍ଦଳ । ଆପଣ ଯେତେବେଳେ ଆମ ସମସ୍ତଙ୍କୁ ଗୋଟିଏ ଉଚ୍ଚତର ଆଦର୍ଶରେ ଅନୁପ୍ରାଣିତ କରିପାରିଛନ୍ତି, ସେତେବେଳେ ନିମ୍ନତର ପ୍ରଲୋଭନର ପ୍ରୟୋଜନ କ'ଣ ? ପୁରସ୍କାର ପଛକୁ ଥାଉ, ଆମ୍ଭେମାନେ ପ୍ରତ୍ୟେକ କ୍ଷେତ୍ରରେ ଆଗେ ପୂର୍ଣ୍ଣତା ହିଁ ପାଉ, ସେହି ହେଉ ଆମର ଏକମାତ୍ର ଲକ୍ଷ୍ୟ । ଅନ୍ୟ ଲକ୍ଷ୍ୟକୁ ପ୍ରଶ୍ରୟ ଦେଲେ ଭେଦବୁଦ୍ଧି ସଂଜାତ ହେବ ।" ମାତ୍ର ସେ ୧୯୫୦ ମସିହା ପ୍ରଥମ ବିଷୁବ ମିଳନ ଅଧିବେଶନରେ ଯାହା ପ୍ରକାଶ କରିଥିଲେ ତାହା କାର୍ଯ୍ୟକାରୀ ହେଲା । ଏହି ପୁରସ୍କାର ବା ସମ୍ମାନ ପ୍ରଦାନକୁ ସେ ତାଙ୍କ କର୍ତ୍ତବ୍ୟ ମନେକଲେ । ସେ କହିଥିଲେ - "'ବିଷୁବ ମିଳନ'ରେ କ୍ଷୁଦ୍ର କାର୍ଯ୍ୟକ୍ରମଟିଏ ମଧ୍ୟ ନିର୍ଦ୍ଧାରିତ ହୋଇଛି । ବନ୍ଧୁ ମିଳନରେ ପ୍ରୀତ୍ୟୁପହାର ପ୍ରଦାନ ଗୃହସ୍ଥର ଧର୍ମ । ଆନନ୍ଦୋତ୍ସବ ସେଥିର ଅଂଶ ।"

ଲେଖକ ଲେଖିକାମାନଙ୍କୁ ଉତ୍ସାହିତ କରିବା ଲକ୍ଷ୍ୟ ନେଇ, 'ପ୍ରଜାତନ୍ତ୍ର' ୧୯୨୪ ମସିହାରୁ ପ୍ରକାଶ ପାଇବା ବେଳେ, ସେଥିରେ ସାହିତ୍ୟ ବିଭାଗ ଭାବେ 'ରବିବାର ପ୍ରଜାତନ୍ତ୍ର' ସଂଯୋଜିତ ହୋଇଥିଲା । ଏହା ଏପରି ଲେଖକ ଲେଖିକାମାନଙ୍କ ପାଖରେ ପହଞ୍ଚି ଉତ୍ସାହିତ କରିଥିଲା ଯେ, 'ପ୍ରଜାତନ୍ତ୍ର'ରେ ଅତି ଅଳ୍ପ ସମୟ ମଧ୍ୟରେ ୧୫୦ ଜଣ ଲେଖକ ଲେଖିକା ଆତ୍ମ ପ୍ରକାଶ କରିପାରିଥିଲେ । 'ଝଙ୍କାର'ରେ ମାତ୍ର ଗୋଟିଏ ବର୍ଷ ଭିତରେ ୯୫ଜଣ ଲେଖକ ଲେଖିକା ନିଜ ନିଜର କବିତା, ଗଳ୍ପ ଓ ପ୍ରବନ୍ଧମାନ ଲେଖି ପାଠକମାନଙ୍କ ନିକଟରେ ପରିଚିତ ହୋଇପାରିଥିଲେ । ଏହି ମର୍ମରେ ଡ. ମହତାବ କହିଥିଲେ - "ଓଡ଼ିଶାରେ ଏତେ ଲେଖକ ଓ ଲେଖିକା ଯେ ଅଛନ୍ତି, ଏହା ଇତି ପୂର୍ବେ କଳ୍ପନା କରିହେଉନଥିଲା । ଲେଖକ ଓ ଲେଖିକାଙ୍କ ସଂଖ୍ୟା କ୍ରମେ ବୃଦ୍ଧି ପାଇବ ଓ ଓଡ଼ିଆ ସାହିତ୍ୟ ଜାତୀୟ ସାହିତ୍ୟ ମଧ୍ୟରେ ପ୍ରଧାନ ହେବ, ଏହି ଆଶା ରଖି ଆମ୍ଭେମାନେ



ରେଭେନ୍ସା ପରିସରରେ ପ୍ରଧାନମନ୍ତ୍ରୀ ନେହରୁ ରାଜ୍ୟପାଳ ଭୀମସେନ ସଚ୍ଚାର ଓ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ (୧୯୫୯)

ଅଗ୍ରସର ହେଉଛୁ ।" ଡ. ମହତାବ ଥିଲେ ଅତ୍ୟନ୍ତ ଦୃଢ଼ମନା ବ୍ୟକ୍ତିତ୍ୱ । ସେ ଯାହା କରିବାକୁ ଚାହୁଁଥିଲେ, ତା' ପଛରେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହୁଥାଏ । ସେଥିପାଇଁ ସେ ଯାତ୍ରାରେ ସଫଳତା ଲାଭ କରୁଥିଲେ । ୧୯୫୨ ମସିହାରେ 'ବିଷୁବ ମିଳନ'ର ତୃତୀୟ ବାର୍ଷିକ ଉତ୍ସବ ପାଳିତ ହେଲା । ସେହି ଉତ୍ସବରେ ତାଙ୍କ ସ୍ୱାଗତ ସମ୍ଭାଷଣ ଉଲ୍ଲେଖନୀୟ । "ଅନୁଷ୍ଠାନ ଗଠିତ ହୁଏ, କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକୁ କେନ୍ଦ୍ରକରି । ସାହିତ୍ୟାନୁଷ୍ଠାନ ପକ୍ଷରେ ନିର୍ଦ୍ଦିଷ୍ଟ କାର୍ଯ୍ୟ ହେଉଛି ନିୟମିତ ଲେଖା ଓ ପଢ଼ା । ଏହି ଦୁଇ କାର୍ଯ୍ୟ ବଢ଼ାଇପାରିଲେ ଅନୁଷ୍ଠାନର ପ୍ରତିଷ୍ଠା ବଢ଼ିବ ।"

ଭବିଷ୍ୟତକୁ ଯିଏ ଦୃଷ୍ଟିରେ ରଖେ, ସେ ହୁଏ ସାର୍ଥକ ପୁରୁଷ । ବର୍ତ୍ତମାନରେ ଠିଆ ହୋଇ ଆଗାମୀକୁ ଲକ୍ଷ୍ୟ ରଖିପାରିଲେ, ଜୀବନରେ ଯାତ୍ରାପଥ ହୁଏ ସଳଖ । ଯୁବକମାନଙ୍କ ଉପରେ ତାଙ୍କର ଆସ୍ଥା ରହିଥିଲା । ସେମାନଙ୍କୁ ସବୁ କ୍ଷେତ୍ରରେ ଉତ୍ସାହିତ କରିବା ଲାଗି ସେ ଆଗ୍ରହୀ ଥିଲେ । ଯୁବକମାନଙ୍କୁ ନେଇ ବହୁ କାର୍ଯ୍ୟ କରାଯାଇପାରେ, ଏଥିରେ ଡ. ମହତାବ ବିଶ୍ୱାସୀ ଥିଲେ । ତାଙ୍କ ଭାଷାରେ – "ଆମ୍ଭେମାନେ ଯୁବକ ଶ୍ରେଣୀର ଉତ୍ସାହ ଉଦ୍ରେକ କରିବାକୁ ସର୍ବଦା ତତ୍ପର ହେବୁ । ଆଜି ଯିଏ ଯୁବକ, କାଲି ସେ ପୁରାତନ; ତା' ସ୍ଥାନରେ ତା'ର ପରବର୍ତ୍ତୀ ନବୀନ ଯୁବକ ଆସି ଛିଡ଼ା ହେଲେଣି । ଏହିପରି ଅବିଶ୍ରାନ୍ତ ସ୍ରୋତ ପରି ସମୟ ଓ ଜୀବନ ଚାଲିଛି । ଆମ୍ଭେମାନେ ବରାବର ଭବିଷ୍ୟକୁ ଦୃଷ୍ଟି ଦେଇ ଚାଲିବୁ । ଏହି ଉଦ୍ୟମରେ ଆମ୍ଭମାନଙ୍କୁ ଚିନ୍ତାରେ ଓ କାର୍ଯ୍ୟରେ ଅତି ପ୍ରଖର ହେବାକୁ ପଡ଼ିବାର କଥା । ଆମ୍ଭେମାନେ ସେ ଦିଗରେ ଅନବରତ ଯତ୍ନବାନ ଅଛୁଁ ବୋଲି ମନେ କରୁଛୁ । ଆଜି ଆମ୍ଭେମାନଙ୍କର ପ୍ରଧାନ ସମ୍ବଳ ତରୁଣ ତରୁଣୀଙ୍କ ଉତ୍ସାହ ଓ ସେମାନଙ୍କ ସକ୍ରିୟ ସମର୍ଥନ" (ପଞ୍ଚମ ବିଷୁବ ମିଳନ – ୧୯୫୪ର ବାର୍ଷିକ ସମ୍ମିଳନୀ)

ବଂଶଧରମାନେ ଆଗକୁ ଯିବା ପାଇଁ ସେ ସବୁବେଳେ ବ୍ୟାକୁଳତା ପ୍ରକାଶ କରୁଥିଲେ । ଦାୟାଦ ତା'ର କୃତିତ୍ୱ ପାଇଁ ସଫଳ ହେଉ । ନିଜର ବ୍ୟକ୍ତିତ୍ୱ ପ୍ରଦର୍ଶନ କରୁ, ଏହା ଡ. ମହତାବଙ୍କ ପରିକଳ୍ପନା । ଏହି ପ୍ରସଙ୍ଗରେ ତାଙ୍କ ମତ ହେଉଛି – "ଆମେ କିଛି ନକରିପାରୁ ପଛକେ, ଆମ ବଂଶଧରମାନେ ଦୁନିଆରେ ଆଗେଇ ଯାଆନ୍ତୁ । ଏଥିପାଇଁ ମୋ ମନରେ ସବୁବେଳେ ଆକୁଳତା । ଏ ଆକୁଳତାକୁ ମୁଁ ମଧ୍ୟ ପ୍ରକାଶ କରିଥିଲି ୧୯୪୬ ସାଲରେ ମୋର ପ୍ରଥମ ବଜେଟ ଭାଷଣରେ । ଉଚ୍ଚ ଚିନ୍ତା, ମହତ କାର୍ଯ୍ୟର ପରିକଳ୍ପନା ଓ ଆତ୍ମବିଶ୍ୱାସ ଏହାହିଁ ଓଡ଼ିଶାର ଯୁବ ପ୍ରାଣକୁ ଆଶାନ୍ୱିତ ଓ ଉତ୍ସାହିତ କରିବାର କଥା" (୧୯୫୫ରେ ଅନୁଷ୍ଠିତ ବିଷୁବ ମିଳନ) । ୧୯୪୬ ମସିହା ଅପ୍ରେଲ ୨୩ ତାରିଖରେ ଡ. ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ । ତାଙ୍କ ଶାସନକାଳ ହେଉଛି ୧୯୪୬ ମସିହା ଅପ୍ରେଲ ୨୩ ତାରିଖରୁ ୧୯୫୦ ମସିହା ମଇ ୧୨ ତାରିଖ । ପରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ, କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଶିକ୍ଷା ଓ ବାଣିଜ୍ୟ ବିଭାଗର ମନ୍ତ୍ରୀ ହେଲେ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଠାରୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ସ୍ଥାନରେ ମୁଖ୍ୟମନ୍ତ୍ରୀ ପଦବୀ ସୃଷ୍ଟି ହେଲା । ସେହି ଶାସନ କାଳରେ ୧୯୪୬ ମସିହାରେ ବିଧାନସଭାରେ ଦେଇଥିବା

ବଜେଟ ଅଧିବେଶନରେ ଡ. ମହତାବ ତାଙ୍କର ମନ କଥା ପ୍ରକାଶ କରିଥିଲେ । ଲେଖକ ସୃଷ୍ଟି କରିବା ଲକ୍ଷ୍ୟ ଦେଇ ତାଙ୍କର ଉଦ୍ୟମ ପ୍ରଶଂସନୀୟ । ସେତେବେଳେ ଲେଖକମାନଙ୍କ ସଂଖ୍ୟା ଅତି ଅଳ୍ପ । ଏହି ମର୍ମରେ କହିଥିଲେ - "ସେତେବେଳେ ଲେଖକଙ୍କ ସଂଖ୍ୟା ମୁଷ୍ଟିମେୟ । ଲେଖିକା ଜଣେ ଦୁଇଜଣ ମାତ୍ର ଥିଲେ । କେବଳ କର୍ତ୍ତବ୍ୟର ପ୍ରେରଣାରେ ରବିବାର 'ପ୍ରଜାତନ୍ତ୍ର' ଓ 'ଝଙ୍କାର' ଆରମ୍ଭ କରାଯାଇଥିଲା । ଏହି ବିଶ୍ୱାସରେ ଯେ ବହୁ ଲେଖକ ଓ ଲେଖିକା ବାହାରି ପଡ଼ନ୍ତୁ । ସ୍ରୋତର ପ୍ରତିବନ୍ଧକ ଦୂର ହୋଇଗଲେ ଓଡ଼ିଆ ସାହିତ୍ୟ କ୍ରମେ ସ୍ୱାଭାବିକ ଅବସ୍ଥାକୁ ଆସିଯିବ । ଏହା ଥିଲା ମୋର ବିଶ୍ୱାସ । ସେତେବେଳେ ବହୁ ବନ୍ଧୁ ବହୁ ଭୟ ଦେଖାଇଥିଲେ । କିନ୍ତୁ କେବଳ ଓଡ଼ିଆ ସାହିତ୍ୟର ଅନ୍ତର୍ନିହିତ ଶକ୍ତି ଉପରେ ବିଶ୍ୱାସ ରଖି ମୁଁ ଏଥିରେ ଆଗେଇଥିଲି"(ସପ୍ତମ ବିଷୁବ ମିଳନ-୧୯୫୬) । ଏପରି ମୂଲ୍ୟବାନ ମନ୍ତବ୍ୟ ସମ୍ବଳିତ ଲିଖିତ ସ୍ୱାଗତ ଅଭିଭାଷଣ ବମ୍ବେରୁ ପଠାଇଥିଲେ । ସେତେବେଳକୁ ଡ. ମହତାବ ଥିଲେ ଅବିଭକ୍ତ ବମ୍ବେର ରାଜ୍ୟପାଳ । ଅଭିବାଦନ ନାମରେ ଏହି ଲେଖାଟି ସେ ପଠାଇଥିଲେ । ବିଷୁବ ମିଳନରେ ତତ୍କାଳୀନ 'ପ୍ରଜାତନ୍ତ୍ର'ର ସଂପାଦକ ଏହା ପାଠ କରିଥିଲେ । ୧୯୫୬ ମସିହା ଅପ୍ରେଲ ସଂଖ୍ୟା 'ଝଙ୍କାର'ରେ ଏହା ପ୍ରକାଶ ପାଇଥିଲା ।

ସାହିତ୍ୟ ସମାଜମୁଖୀ ହେଉ, ଏହାଦ୍ୱାରା ସମାଜ ଦିଗଦର୍ଶନ ପାଇପାରିବ । ଯେଉଁଠି ସାହିତ୍ୟ ସମାଜଠାରୁ ଦୂରରେ, ସେଠାରେ ସାହିତ୍ୟ ଓ ସମାଜର ସଂପର୍କ ରହିନଥାଏ । ସେପରି ସାହିତ୍ୟ ଆଦର ଲାଭ କରେନାହିଁ । ଏ ପ୍ରସଙ୍ଗରେ ଡ. ମହତାବ କହନ୍ତି - "ଭାରତୀୟ ସାହିତ୍ୟ ବିଷୟ ଆଲୋଚନା କଲେ ଦେଖାଯିବ ଯେ, ଯେଉଁ ପ୍ରାଦେଶିକ ସାହିତ୍ୟ ସମାଜର ପରିବର୍ତ୍ତନକୁ ଲକ୍ଷ୍ୟ ରଖି ଗତି କରୁଛି, ସେ ସାହିତ୍ୟ ବେଶୀ ଆଦୃତ । ଯେଉଁଠି ତାହା ହେଉନାହିଁ, ସେଠି ସାହିତ୍ୟ ପାଠକଙ୍କ ଆଦରରୁ ବଞ୍ଚିତ । ଯେତେ ପ୍ରକାରର ପରିବର୍ତ୍ତନ ମାଡ଼ି ଆସୁ ପଛକେ, ସାହିତ୍ୟିକ ସବୁଥିର ସମ୍ମୁଖୀନ ହୋଇ ସବୁ ପରିବର୍ତ୍ତନକୁ ନିଜ ଲେଖାରେ ରୂପାୟିତ କରିପାରିବେ, ଏଥିରେ ସନ୍ଦେହ ନାହିଁ । କେବଳ ଆବଶ୍ୟକ ଉତ୍ସାହ ଓ କର୍ମ ପ୍ରବଣତା । ଏହିଠାରେ ଯୁବଶକ୍ତିର ଆବଶ୍ୟକତା" (ନବମ ବିଷୁବ ମିଳନ - ୧୯୫୮ରେ ପ୍ରଦତ୍ତ ଅଭିଭାଷଣ) । ସାହିତ୍ୟ ସାହିତ୍ୟିକଙ୍କ ଦ୍ୱାରା ସୃଷ୍ଟି ହୁଏ । ମାତ୍ର ସେ ସାହିତ୍ୟର ପୃଷ୍ଠପୋଷକତା କରାଯିବା ଏକାନ୍ତ ଆବଶ୍ୟକ । ଯଦି ସାହିତ୍ୟ ପୃଷ୍ଠପୋଷକ ବା ସମର୍ଥକ ସୃଷ୍ଟି କରି ପାରିନାହିଁ, ସେ ସାହିତ୍ୟର ଜୀବନ-ଶକ୍ତି ଦୁର୍ବଳ ଓ କ୍ଷଣସ୍ଥାୟୀ ।

ସାହିତ୍ୟ ସ୍ୱଚ୍ଛନ୍ଦ ଭାବରେ ସୃଷ୍ଟି ହୁଏ ଏବଂ ଅଭିବୃଦ୍ଧି ଲାଭକରେ । ଏପରି ସାହିତ୍ୟ ଦୀର୍ଘଜୀବୀ ମଧ୍ୟ ହୋଇଥାଏ । କେଡ଼େ କୁଣ୍ଠାହୀନ ଭାବରେ ଡ. ମହତାବ ଏହାକୁ ପ୍ରକାଶ କରିଛନ୍ତି - "ସାହିତ୍ୟର ସୃଷ୍ଟି ମନର ସ୍ୱଚ୍ଛନ୍ଦ ବିହାରରେ ଓ ସେଇଥିରେ ତା'ର ଅଭିବୃଦ୍ଧି । ଆଗେ ସାହିତ୍ୟ, ପରେ ତା'ର ସମର୍ଥକ । ଯେଉଁ ସାହିତ୍ୟ ସମର୍ଥକ ସୃଷ୍ଟି କରିପାରୁନାହିଁ, ହୁଏତ ସେ ସାହିତ୍ୟରେ କିଛି ତ୍ରୁଟି ରହିଛି ବା ସେ ସମାଜରେ କିଛି ତ୍ରୁଟି ରହିଛି । କିନ୍ତୁ ସମାଜକୁ ସମାଲୋଚନା କେବଳ ଆପ୍ତ ବ୍ୟକ୍ତିମାନେ କରିପାରିବେ । ଯେକୌଣସି ଲୋକ କରିପାରିବେ ନାହିଁ"(ଦଶମ ବିଷୁବ ମିଳନ - ୧୯୫୯ ଅଧିବେଶନର ଭାଷଣ) । ଶାସକମାନେ ସାହିତ୍ୟିକ ହୋଇପାରିବେ ନାହିଁ, ସାହିତ୍ୟ ଚର୍ଚ୍ଚା ସେମାନଙ୍କ ଦ୍ୱାରା କରାଯିବା ଅନୁଚିତ । ଏମିତି ସମାଲୋଚନା ବି ଶୁଣାଯାଏ । ଏହାକୁ ବିରୋଧ କରି ଡ. ମହତାବ ମତ ଦିଅନ୍ତି - "କେହି କେହି ଶାସନାଧିକାରୀ ସାହିତ୍ୟ ଚର୍ଚ୍ଚା କରିବା ମଧ୍ୟ ଆକ୍ଷେପର ବିଷୟ ହୋଇଛି । ସାହିତ୍ୟଚର୍ଚ୍ଚା କରିବାର ଅଧିକାର ସମସ୍ତଙ୍କର ଅଛି । ଶାସନ ସହିତ ସଂପର୍କ ଥିବା ଲୋକେ ସାହିତ୍ୟ ଚର୍ଚ୍ଚା କରିବେ ନାହିଁ, ଏପରି ମତ ବ୍ୟକ୍ତ କରିବା ବିକୃତ ମସ୍ତିଷ୍କର ପରିଚାୟକ ମାତ୍ର" (୧୯୫୯ ବିଷୁବ ମିଳନର ବାର୍ଷିକ ଅଧିବେଶନ) ।

ସାହିତ୍ୟ କ୍ଷେତ୍ରରେ ନିଜକୁ ତଲ୍ଲୀନ କରିଦେବା ସାଧକ ହିଁ କେବଳ ସାହିତ୍ୟର ମର୍ମ ଅଙ୍ଗେ ଅଙ୍ଗେ ଅନୁଭବ କରିଥାଏ । ଜନ ଜୀବନ କେଉଁ ସାହିତ୍ୟକୁ କୋଳେଇ ନେବ ଏବଂ କେଉଁ ସାହିତ୍ୟ ଜନତା ଲାଗି ଉଦ୍ଦିଷ୍ଟ ଏହା ନିର୍ଭର କରେ ସ୍ରଷ୍ଟା ଉପରେ । ଏହି ଦୃଷ୍ଟିରୁ ଡ. ମହତାବ ଯଥାର୍ଥରେ ୧୯୬୧ ମସିହାରେ ଅନୁଷ୍ଠିତ ଦ୍ୱାଦଶ ବିଷୁବ ମିଳନରେ କହିଥିଲେ - "ପ୍ରତିଷ୍ଠିତ ସାହିତ୍ୟିକଙ୍କ ଲେଖା ପ୍ରତି ଜନତାର ଆଗ୍ରହ ରହିଛି । ଜନତାର ସମୂହ ଚିନ୍ତା ସହଜରେ ବିପଥଗାମୀ ହୁଏ ନାହିଁ । ଯଦି ବା ହୁଏ, ତେବେ ତାହା ଅଳ୍ପ କାଳ ପାଇଁ । ଯେଉଁ ସାହିତ୍ୟ ଜନତାର ମନ ଆଲୋଡ଼ନ କରି ତାକୁ କୌଣସି ଦିଗରେ ପ୍ରଭାବିତ କରୁଛି, ସେହି ସାହିତ୍ୟ ହିଁ ନର୍ଭରଯୋଗ୍ୟ । ସେ ସାହିତ୍ୟ କବିତା, ପ୍ରବନ୍ଧ ବା ବକ୍ତୃତା ଯାହା କିଛି ହୋଇପାରେ ।" ନୂତନ ପ୍ରତିଭାକୁ ଆଦର କରିବା ହେଉଛି ସୃଷ୍ଟିର ଧର୍ମ । କେବଳ ପୁରାତନକୁ ଧରି ବସିଲେ ଜୀବନଯାତ୍ରା ଅଚଳ ହୋଇପଡ଼େ । ଏହା ଯେପରି ସାରସ୍ୱତ ସାର୍ଥକ ଯାତ୍ରୀ ଡ. ମହତାବଙ୍କୁ ଜଣାଥାଏ । ସେ କେଡ଼େ ମନଛୁଆଁ ଭାବରେ ଏହି ସତ୍ୟଟିକୁ କହିପାରିଛନ୍ତି ସତେ ! "ନୂତନ ଦିଗ୍‌ବଳୟର ଜନ୍ମ ପୂର୍ବରୁ

ପୁରାତନ ପତ୍ର ସ୍ୱତଃ ଝଡ଼ିପଡ଼ି ନବାଗନ୍ତୁକମାନଙ୍କୁ ସ୍ଥାନ ଛାଡ଼ିଦିଏ । ଯଦି ସବୁ ସ୍ଥାୟୀ ହୋଇଥାନ୍ତା, ନୀରସ ନିର୍ଜୀବ ପ୍ରସ୍ତରମୟ ଜଗତରେ ସୌନ୍ଦର୍ଯ୍ୟର ସ୍ଥାନ ନଥାନ୍ତା" (୧୯୬୮ର ବିଷୁବ ମିଳନରେ ପ୍ରଦତ୍ତ ସ୍ୱାଗତ ଭାଷଣ) ।

ସମାଜରେ ଉପଦେଶ ଦେବା ଲୋକର ଅଭାବ ନାହିଁ । ସମସ୍ତେ ଏହି ଆସନରେ ବସିବା ପାଇଁ ଆଗ୍ରହୀ । ମାତ୍ର ଉପଦେଷ୍ଟା ହେବା ପାଇଁ ଯେଉଁ ଯୋଗ୍ୟତା ଆବଶ୍ୟକ, ତାହା ସେମାନଙ୍କ ଠାରେ ଅଛି କି ନା ତାହା ଜାଣିବା ସବୁଠୁ କଷ୍ଟକର ବ୍ୟାପାର । ଏହି ଆସନରେ ବସିବା ପୂର୍ବରୁ ସେମାନେ ଏଥିପାଇଁ କେତେଦୂର ଭାଜନ ତାହା ଚିନ୍ତା କରିବା ଉଚିତ । ନଚେତ ସେପରି ଉପଦେଶରେ ମୂଲ୍ୟ ରହିବ ନାହିଁ । ସମାଜରେ ସେଭଳି ଉପଦେଷ୍ଟାଙ୍କୁ ସମ୍ମାନ ମିଳିବ ନାହିଁ । ଏହି ଚିନ୍ତାଧାରାକୁ ଡ. ମହତାବ ଅତ୍ୟନ୍ତ ଗୁରୁତ୍ୱର ସହ ବିଚାର କରିଛନ୍ତି । ଏହି ପ୍ରସଙ୍ଗରେ ସେ କହନ୍ତି – "ଆମେ ଯେଉଁମାନେ ପୁରାତନ ଅଛୁଁ, ଆମ୍ଭେମାନେ ମଧ୍ୟ ସ୍ଥିର କରିଦେବା ଉଚିତ ଯେ ନିଜେ ନିଜ ବିଚାର ଅନୁସାରେ କାର୍ଯ୍ୟ କରିଯାଇ ଅନ୍ୟକୁ କୌଣସି କାର୍ଯ୍ୟ କରିବା ବା ନ କରିବା ପାଇଁ ଉପଦେଶ ଦେବା କାର୍ଯ୍ୟରୁ ବିରତ ହେବା । ପ୍ରଥମତଃ ଆମ ଠାରେ ଉପଦେଷ୍ଟା ହେବାର ଯୋଗ୍ୟତା ଅଛି ବୋଲି ପ୍ରମାଣିତ ହୋଇନାହିଁ । ଦ୍ୱିତୀୟତଃ ଏତେବେଶୀ ଉପଦେଶ ଦିଆଗଲାଣି ଯେ ସେଥିରେ ନୂତନ ଉପଦେଶ ଦେବାପାଇଁ ଆଉ ଅବକାଶ ନାହିଁ । ଉପଦେଶ ହିଁ ଯୁବକମାନଙ୍କ ପକ୍ଷରେ ବିରକ୍ତିଜନକ । ସେମାନେ ଯେତିକି ଶକ୍ତି ତଦନୁସାରେ ନିଜ ବିଚାର କରି ଚାଲନ୍ତୁ" (୧୯୬୮ ମସିହା ବିଷୁବ ମିଳନ) । ପ୍ରତ୍ୟେକ ମଣିଷ ଓ ସମାଜର ନିର୍ଦ୍ଦିଷ୍ଟ ଜୀବନଦର୍ଶନ ରହିଛି । ସାହିତ୍ୟ ଏହି ଜୀବନ ଦର୍ଶନ ଦ୍ୱାରା ବହୁ ଭାବରେ ସଂଶ୍ଳିଷ୍ଟ । ଭାରତ ବର୍ଷ ଯେଉଁ ଜୀବନ ଦର୍ଶନ ଦ୍ୱାରା ପ୍ରଭାବିତ ହେଉଥିଲା, ତାହା ହେଉଛି ଆଧ୍ୟାତ୍ମବାଦ । କିନ୍ତୁ ବହୁବର୍ଷ ହେଲା ଅର୍ଥବାଦ ଭାରତବର୍ଷକୁ କବଳିତ କରିଛି । ଏହାର ବହୁ କାରଣ ରହିଛି । ତଥାପି ସ୍ୱାଧୀନତା ପୂର୍ବରୁ ମହାତ୍ମାଗାନ୍ଧୀ ଭାରତର ଏପରି ଚିନ୍ତାଧାରାକୁ ପରିବର୍ତ୍ତନ କରିବା ଲାଗି ପ୍ରୟାସ ଜାରି ରଖିଥିଲେ । ସମାଜବାଦ ଭାରତପାଇଁ ଆବଶ୍ୟକ ଥିବାବେଳେ, ଏହାକୁ ସଂପୂର୍ଣ୍ଣ ଭାବେ ଗ୍ରହଣ କରାଯାଇପାରିନାହିଁ । ଆଧ୍ୟାତ୍ମିକତା ଭାରତର ଆତ୍ମା ହୋଇଥିବା ବେଳେ, ଏହା ଆଜି ସମଗ୍ର ଭାରତ ବର୍ଷରେ ଗୃହୀତ ହୋଇପାରିନାହିଁ । ଏକଦା ସ୍ୱାମୀ ବିବେକାନନ୍ଦ ଏହି ଆଦର୍ଶକୁ ସମଗ୍ର ବିଶ୍ୱରେ ପ୍ରଚାରିତ

କରିବା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ଏଥିପାଇଁ ସେ ପ୍ରଶଂସିତ ହୋଇଥିଲେ । ଏହାକୁ ଲକ୍ଷ୍ୟ କରି ଡ. ମହତାବ କହନ୍ତି - "ସୁଦୂର ଅତୀତରେ ଭାରତର ଦର୍ଶନ ଥିଲା ଆଧ୍ୟାତ୍ମବାଦ, କିନ୍ତୁ ନିକଟ ଅତୀତରୁ ଚାଲିଆସିଛି ଅର୍ଥବାଦ । ଭାରତର ଜୀବନ ଦର୍ଶନକୁ ଆଧ୍ୟାତ୍ମ ଆଡ଼କୁ ଫେରାଇ ଆଣିବା ଲାଗି ମହାତ୍ମାଗାନ୍ଧୀ ଉଦ୍ୟମ କରିଥିଲେ, ମାତ୍ର ସ୍ୱାଧୀନତା ପରେ ସେ ଉଦ୍ୟମ ପରିତ୍ୟକ୍ତ ହୋଇଛି । ଅର୍ଥବାଦକୁ ମଧ୍ୟ ଭାରତର ନେତୃତ୍ୱ ପରିତ୍ୟାଗ କରିଛି, ଅଥଚ ସମାଜବାଦ ଗୃହୀତ ହୋଇନାହିଁ । ଏହି ଅବସ୍ଥାରେ ନିର୍ଦ୍ଦିଷ୍ଟ ଦର୍ଶନ ବିନା ଆଦର୍ଶବିହୀନ ହୋଇ ଆଗାଧ ସମୁଦ୍ରରେ ଲକ୍ଷ୍ୟ ବିହୀନ ନୌକା ପରି ଭାରତୀୟ ସମାଜ ଚାଲିଛି । ଏହି ଅବସ୍ଥା ପ୍ରତିଫଳିତ ହେଉଛି ସାହିତ୍ୟରେ । ଏପରି ଅବସ୍ଥାରେ ଲେଖକର ନିଜର ବିଶ୍ୱାସ ଓ ପାଠକ ସାଧାରଣତଃ ବିଶ୍ୱାସ ହିଁ ସାହିତ୍ୟର ପଥ ନିର୍ଦ୍ଦେଶକ । ଏହି ଗୁରୁ ଦାୟିତ୍ୱ ବର୍ତ୍ତମାନ ସାହିତ୍ୟ ଉପରେ ପଡ଼ିଛି" (ବିଂଶତମ ବିଷୁବ ମିଳନ- ୧୯୬୯) ।

ଆଉ ଅତୀତରେ କଣ ଥିଲା ଝୁରିହେବାର ବେଳ ନାହିଁ । ଗୋଟିକ ପରେ ଗୋଟିଏ ନୂଆ ସୃଷ୍ଟି ଭିତରେ ମଣିଷ ନିଜକୁ ଆବିଷ୍କାର କରୁ । ତା'ରି ଭିତରେ ମାନବିକତା ପ୍ରକାଶପାଉ । ଏହା ହେଉ ସାହିତ୍ୟର ଲକ୍ଷ୍ୟ । ସାହିତ୍ୟ ଏଥିରୁ ବିଚ୍ୟୁତ ହେଲେ ସାହିତ୍ୟିକ ସମ୍ମାନିତ ହେବ ନାହିଁ । କ'ଣ ଥିଲା ତାକୁ ଯେପରି ସ୍ମରଣ କରିବା, କ'ଣ ନାହିଁ ତା'ପାଇଁ କ'ଣ କରାଯିବା ଉଚିତ, ସେ ବିଷୟରେ ଚିନ୍ତା କରାଯାଉ । ସାହିତ୍ୟ ଏ ଦିଗରେ ଦିଗଦର୍ଶନ ଦେଉ । ଭବିଷ୍ୟତକୁ ବରଣ କରିନେବାରେ ଆନନ୍ଦ ଅଛି । ଯଦି କେବଳ ମଣିଷ ଓ ସମାଜ ଅତୀତମୁଖୀ ହୋଇ ରହେ, ସେ କେବଳ ସ୍ଥାଣୁ ହୋଇଯାଏ । ଭବିଷ୍ୟତ ଲାଗି ସେ ଯେଉଁ ପ୍ରତିଶ୍ରୁତି ଦିଏ ତାହାହିଁ ହୁଏ ତା'ଲାଗି ପ୍ରତିଷ୍ଠାର ଉତ୍ସ । ଏହାକୁ ଲକ୍ଷ୍ୟ କରି ଡ. ମହତାବ କହନ୍ତି - "କୋଣାର୍କକୁ ଝୁରି ହେବାର ଯୁଗ ଚାଲିଯାଇଛି । ମଧୁଶଯ୍ୟାର ବର୍ଣ୍ଣନାର ମଧ୍ୟ ଯୁଗ ଯାଇଛି । ଗୋଟିଏ କୋଣାର୍କ ଧ୍ୱଂସ ପାଇଥିଲେ ମଧ୍ୟ ସତ କୋଣାର୍କ ଗଢ଼ିବାର ଶକ୍ତି ଏ ଜାତିର ଅଛି । ନୂତନର ଅଭିବାଦନ ଓ ପରିବର୍ତ୍ତନର ଅଭିନନ୍ଦନର ବ୍ୟବସ୍ଥା ଭିତରେ ମଣିଷ ଚାଲିଥାଏ । ବର୍ଷକୁ ବର୍ଷ ସବୁ ଅତୀତକୁ ଭୁଲିଯାଇ ପ୍ରକୃତ ଭବିଷ୍ୟତ ପାଇଁ ସେ ନୂତନକୁ ବରିନିଏ । ବ୍ୟକ୍ତି ବା ସମାଜ ସେହିପରି ଅତି ପରିମାଣରେ ଅତୀତରେ ଲିପ୍ତ ରହିଲେ ଶେଷରେ ସେ ସ୍ଥାଣୁ ଅବସ୍ଥାକୁ ଆସିଯାଏ । ବର୍ତ୍ତମାନର ବିଚାରରେ ବ୍ୟକ୍ତି ବା ଜାତି ସମ୍ମାନ ଲାଭକରେ ଓ ଭବିଷ୍ୟତର ପ୍ରତିଶ୍ରୁତି

ଯୋଗେ ତାର ପ୍ରତିଷ୍ଠା ବୃଦ୍ଧି ପାଏ"(୧୯୭୦ ମସିହା ଏକବିଂଶ ବିଷୁବ ମିଳନ) । ପରଂପରା ଭିତରେ ମଣିଷ ଓ ସମାଜ ବଂଚିଛି । ଏହାକୁ ବାଦ ଦେଇ ସମାଜ ବା ବ୍ୟକ୍ତି ତିଷ୍ଠି ପାରେନାହିଁ । ସୃଷ୍ଟିର ମୂଳଉତ୍ସ ସହ ସଂପର୍କ ତୁଟିଗଲେ ନିଜେ ତିଷ୍ଠି ରହିବା ସମ୍ଭବପର ନୁହେଁ । ଯେଉଁମାନେ ଆଜି ଲେଖାଲେଖି କରୁଛନ୍ତି ସେମାନେ ଏହା ପ୍ରତି ଦୃଷ୍ଟି ରଖିବା ଏକାନ୍ତ ଆବଶ୍ୟକ । ଏହା ହେଉଛି ସାହିତ୍ୟର ଦିଗ୍‌ଦର୍ଶନ । ପରଂପରାକୁ ଆଧାର କରି ଯୁଗ ସହିତ ତାଳ ଦେଇ ଗତି କରିବା ହେଉଛି ମଣିଷର ବ୍ରତ ଓ ସମାଜର ଧର୍ମ । ଏହି ପ୍ରସଂଗରେ ଡ. ମହତାବ ମତ ଦିଅନ୍ତି – "ପ୍ରତିଷ୍ଠିତ ଲେଖକମାନେ ନିଜ ନିଜ ମଧ୍ୟରେ ଚିନ୍ତାର ଆଦାନ ପ୍ରଦାନ କରୁଛନ୍ତି । ସ୍ରୋତ ଯେତେ ପ୍ରଖର ହେଉ ପଛକେ, ଉତ୍ପତ୍ତି ସହିତ ଏହାର ସଂପର୍କ ରହିବ ହିଁ ରହିବ । ଅନ୍ୟଥା ଏହା ଧାରାହରା ହୋଇ ଶୁଷ୍କ ବାଲୁକାମୟ ନଦୀଟିଏ ହୋଇରହିଯିବ । ଏଣୁ ପରଂପରା ଉପରେ ଦୃଷ୍ଟି ଦେଇ ସ୍ରୋତ ସଂଗେ ଗତି କରିବାକୁ ହେବ । ନିଜର ଜୀବନର ଅନନ୍ତ ସତ୍ତାର ଉପଲବ୍ଧି ସଂଗେ ସଂଗେ ସାମାଜିକ ଜୀବନର ପରିଚାଳନା ସହିତ ଗୁରୁତ୍ୱ ଦେବାକୁ ହେବ । ସାମାଜିକ ଜୀବନରେ ବ୍ୟକ୍ତିକୁ ସମାଜ ହାତରେ ସମର୍ପଣ କରିବାକୁ ହେବ" । (୧୯୭୧ ମସିହା ବିଷୁବ ମିଳନ)

ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ତାଙ୍କ ପ୍ରତିଷ୍ଠିତ ସାରସ୍ୱତ ବିଷୁବ ମିଳନରେ ଉପସ୍ଥିତ ରହୁଥିଲେ । ବିଭିନ୍ନ ଅଞ୍ଚଳରୁ ଆସୁଥିବା ଲେଖକ ଲେଖିକାମାନଙ୍କୁ ଦେଖି ସେ ସନ୍ତୋଷ ଲାଭ କରୁଥିଲେ । ବହୁ ସଂଖ୍ୟକ ସାହିତ୍ୟିକଙ୍କୁ ବିଷୁବ ମଣ୍ଡପରେ ଦେଖି ସେ ବିହ୍ୱଳ ହୋଇପଡୁଥିଲେ । ସେ ତାଙ୍କ ମନର ଭାବନାକୁ ସ୍ୱାଗତ ସମ୍ଭାଷଣରେ ପ୍ରକାଶ କରି ଅଭିବାଦନ ଜଣାଉଥିଲେ । ସେହି ଅଭିବାଦନ ଉଲ୍ଲେଖନୀୟ ତଥ୍ୟମୂଳକ ଉକ୍ତିରେ ପରିଣତ ହୋଇଯାଉଥିଲା । ସେହିସବୁ ମୂଲ୍ୟବାନ ଉକ୍ତି ଗୁଡ଼ିକରୁ କେତୋଟି ମାତ୍ର ଏହି ଆଲୋଚନାରେ ଉଦ୍ଧାର କରାଗଲା । ଏହାହିଁ ହେଉଛି ଜଣେ ନିଷ୍ଠାପର ସାରସ୍ୱତ ଯାତ୍ରୀର ଅଭିଳାଷ । ଏହିସବୁ ମନ୍ତବ୍ୟରୁ ସାଂପ୍ରତିକ ପୀଢ଼ିର ସଂଗଠକ, ଲେଖକ, ଲେଖିକା, ବୁଦ୍ଧିଜୀବୀ ଓ ସମାଜ ସଂସ୍କାରକମାନେ ଯଥେଷ୍ଟ ପ୍ରେରଣା ପାଇବେ ବୋଲି ଆମର ଆଶା ।

ସଂପାଦକ, 'ସାଳନ୍ଦୀ ସମାଚାର'
ମଠସାହି, ଭଦ୍ରକ



# ପଟେଲ, ମହତାବ ଓ ରାଜ୍ୟ ମିଶ୍ରଣ

ଭାସ୍କର ପରିଛା

ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କୁ ଭାରତର ଲୌହମାନବ ଏଥି ପାଇଁ କୁହାଯାଏ ଯେ, ସେ ଯଦି ସ୍ୱାଧୀନତା ପରେ ଉପପ୍ରଧାନମନ୍ତ୍ରୀ ହୋଇନଥାନ୍ତେ। ଭାରତର ଇତିହାସ ଅଲଗା କିଛି ହୋଇଥାଆନ୍ତା। ଭାରତର ତିନି ମନୀଷି ଗାନ୍ଧିଜୀ, ନେହେରୁ ଓ ସର୍ଦ୍ଦାର ପଟେଲ ଦେଶକୁ ଏକ ନୂଆ ଦିଗଦର୍ଶନ ଦେଇଥିଲେ କେବଳ ନୁହେଁ, ଭାରତକୁ ଏକକ ରାଷ୍ଟ୍ର ଭାବରେ ଠିଆ କରିବାରେ ଏମାନଙ୍କର ଅବଦାନ ଥିଲା ଅଦ୍ୱିତୀୟ।

ଭାରତ ଛାଡିବା ପୂର୍ବରୁ ବ୍ରିଟିଶ୍ ସରକାର ଘୋଷଣା କରିଥିଲେ ଯେ, କେବଳ ବ୍ରିଟିଶ୍ ଶାସନାଧିନ ଅଂଚଳ ନୁହେଁ ରାଜାରାଜୁଡା ଅଂଚଳ ଉପରେ ମଧ୍ୟ ବ୍ରିଟିଶ୍‌ର କୌଣସି କର୍ତ୍ତୃତ୍ୱ ଆଉ ରହିବ ନାହିଁ। ଅନ୍ୟ ଅର୍ଥରେ ଦେଶର ୬୨୫ଟି ଛୋଟ ବଡ ରାଜ୍ୟ ଭାରତ ଓ ପାକିସ୍ତାନ ଭଳି ସ୍ୱତନ୍ତ୍ରତା ହାସଲ କଲେ। ତେବେ ଯଦି ସେମାନଙ୍କୁ ସ୍ୱାଧୀନ ହୋଇ ରହିବାକୁ ଦିଆଯାଇଥାଆନ୍ତା ଭାରତର ଭବିତବ୍ୟ କ'ଣ ହୋଇଥାଆନ୍ତା ତାହାର ଆକଳନ  କରିବା କଷ୍ଟ।

ସର୍ଦ୍ଦାର ପଟେଲ ଏହି ରାଜ୍ୟ ମିଶ୍ରଣ କାର୍ଯ୍ୟକୁ ଏତେ ଚମତ୍କାର ଓ ଦକ୍ଷତାର ସହିତ ସମ୍ପନ୍ନ କରିପାରିଥିଲେ ଯେ, ଆଜି ପର୍ଯ୍ୟନ୍ତ ତାଙ୍କୁ ସେହି କାର୍ଯ୍ୟ ପାଇଁ ଇତିହାସ ମନେ ରଖିଛି। ଏକ ଅଖଣ୍ଡ ଓ ଏକକ ଭାରତର ଯଜ୍ଞରେ ପୂର୍ଣ୍ଣାହୂତି ପଡିଲା ଯେଉଁ ଦିନ ହାଇଦ୍ରାବାଦ ଭାରତ ସହିତ ସମ୍ପୂର୍ଣ୍ଣ ଭାବରେ ମିଶିଲା। ଯୁଗ ଯୁଗ ଧରି ଭାରତରେ ଯେଉଁ ବିବାଦ, ବିଚ୍ଛିନ୍ନତାବାଦ ଓ ପାରସ୍ପରିକ ଶତ୍ରୁତା ଲାଗି ରହିଥିଲା ତାହା ବିନା

ରକ୍ତପାତରେ ସବୁଦିନ ପାଇଁ ତାହା ଶେଷ ହୋଇଯାଇପାରିଥିଲା ଏବଂ ଏହା ସମ୍ଭବ ହୋଇଥିଲା କେବଳ ସର୍ଦ୍ଦାର ପଟେଲଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁ ।

୧୯୩୬ ଅପ୍ରେଲ ୧ରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଭାବରେ ସ୍ୱୀକୃତି ପାଇଲା ଓ ସାର ଜନ୍ ଅଷ୍ଟିନ୍ ହବାକ୍ ଏହାର ପ୍ରଥମ ଗଭର୍ଣ୍ଣର ହେଲେ । ରେଭେନ୍ସା କଲେଜ ହଲ୍‌ରେ ସେ ଶପଥ ନେବା ପରେ ଓଡିଆ ଭାଷା କହୁଥିବା ଲୋକଙ୍କ ଦୀର୍ଘ ଦିନର ସ୍ୱପ୍ନ ପୂରଣ ହେଲା । ଏହାର ୨ ବର୍ଷ ପରେ ଅର୍ଥାତ୍ ୧୯୩୮ ମସିହାରେ ହରିପୁରା ଅଧିବେଶନରେ କଂଗ୍ରେସ କେବଳ ଯେ, ପୂର୍ଣ୍ଣ ସ୍ୱରାଜ ତଥା ଘୋଷଣା କଲା ତା'ନୁହେଁ, ରାଜାରାଜୁଡାଙ୍କ ଅଧିନରେ ଥିବା ଅଂଚଳ ଗୁଡିକୁ ବି ମିଶାଇବା ପାଇଁ ସ୍ଥିର କଲା ।

ଓଡିଶାରେ ଏହି ସମୟରେ ଘମାଘୋଟ ଆନ୍ଦୋଳନ ଚାଲିଥାଏ । ୧୯୩୮ ମସିହାରେ ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ଲୋକଙ୍କ ଗଣତାନ୍ତ୍ରିକ ଅଧିକାର ପାଇଁ ଯେଉଁ ସ୍ୱର ଉଠିଲା ତାହା ଅନ୍ୟତ୍ର ବି ପ୍ରତିଧ୍ୱନିତ ହେବାକୁ ଲାଗିଲା । ତାଳଚେରରେ ସାମନ୍ତବାଦୀ ଶୋଷଣ ବିରୁଦ୍ଧରେ ଆନ୍ଦୋଳନ ଖୁବ୍ ଆଗେଇ ଯାଇଥିଲା । ବାଜି ରାଉତର ବଳିଦାନ, ବେଜେଲ୍‌ଗେଟ୍ ହତ୍ୟାକାଣ୍ଡ ଏହି ସବୁ ଓଡିଶା ଇତିହାସର ଏକ ଏକ ଉଲ୍ଲେଖନୀୟ ଘଟଣା ।

୧୯୩୭ ମସିହାରେ ଡ. ହରେକୃଷ୍ଣ ମହତାବଙ୍କ ଅଧକ୍ଷତାରେ ଏକ କମିଟି ଗଠିତ ହେଲା । ଏହି କମିଟିର ଉଦ୍ଦେଶ୍ୟ ଥଲା ରାଜାରାଜୁଡା ଅଂଚଳରେ ଲୋକମାନଙ୍କ ଅବସ୍ଥା କ'ଣ ଅଛି ତା'ର ତଦାରଖ କରିବା । ୧୯୩୮ ଜୁଲାଇ ମାସରେ ଏହି କମିଟିର ରିପୋର୍ଟ ପ୍ରକାଶ ପାଇଲା । ମହତାବ କମିଟି ରିପୋର୍ଟରେ ଅତି ନିଖୁଣ ଭାବରେ ବର୍ଣ୍ଣନା କରାଯାଇଥିଲା ସେହି ସମୟର ଶୋଷଣ ଓ ରାଜାମାନେ କିଭଳି ଲୋକଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ଏହି କମିଟିର ଗୋଟିଏ ଗୁରୁତପୂର୍ଣ୍ଣ ସୁପାରିସ ଥିଲା ଯେ, ବିଟ୍ରିଶ୍ ପକ୍ଷରୁ ରାଜ୍ୟଗୁଡିକୁ ଯେଉଁ ସନନ୍ଦ ଦିଆଯାଇଥିଲା ତାହାକୁ ପ୍ରତ୍ୟାହାର କରିନିଆଯାଉ ଓ ଏହି ସବୁ ରାଜ୍ୟକୁ ଓଡିଶା ପ୍ରଦେଶ ସହିତ ମିଶାଇ ଦିଆଯାଉ । ସେତେବେଳର ଭାଇସ୍‌ରୟ (ବଡଲାଟ୍) ଲର୍ଡ ଲିନ୍‌ଲିଥ୍‌ଗୋଙ୍କୁ ଏହି ଅନୁସନ୍ଧାନ ରିପୋର୍ଟ ୧୯୩୯ ମସିହାରେ ପ୍ରଦାନ କରାଗଲା ।

୧୯୪୭ରେ ଭାରତକୁ କ୍ଷମତା ହସ୍ତାନ୍ତର ପୂର୍ବରୁ ବି ଯେତେବେଳେ ହରେକୃଷ୍ଣ



ରାଜ୍ୟ ପ୍ରଧାନମନ୍ତ୍ରୀମାନଙ୍କ ଗହଣରେ ମହତାବ (ବାମରୁ ୩ୟ ଆସନ) ପଛଧାଡ଼ିରେ ଛିଡ଼ା ହୋଇଛନ୍ତି କେନ୍ଦ୍ର ମନ୍ତ୍ରିମଣ୍ଡଳର ସଦସ୍ୟ ଜବାହରଲାଲ ନେହରୁ ଓ ସର୍ଦ୍ଦାର ପଟେଲ ପ୍ରମୁଖ (୧୯୪୭)

ମହତାବ ଓଡିଶା ପ୍ରଦେଶର ପ୍ରଧାନମନ୍ତ୍ରୀ ଥିଲେ ସେହି ସମୟରେ ସେ ଏହି ସବୁ ସମସ୍ୟାକୁ ସମାଧାନ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ। ୧୯୪୬ ମସିହା ଅପ୍ରେଲ ୬ ତାରିଖରେ ସେ କ୍ୟାବିନେଟ୍ ମିଶନର ସଦସ୍ୟମାନଙ୍କୁ ଭେଟି ଯେଉଁ ସ୍ମାରକପତ୍ର ଦେଇଥିଲେ ସେଥିରେ ସେ ଖୁବ୍ ଯୋରଦାର ଦାବି ଉଠାଇଥିଲେ ଯେ ଆର୍ଥିକ, ସାମାଜିକ ଓ ଭୌଗୋଳିକ କାରଣରୁ ଗଡଜାତ ଗୁଡିକୁ ଓଡିଶା ପ୍ରଦେଶ ସହିତ ମିଶାଇବା ନିତାନ୍ତ ଜରୁରୀ। ୨୬ ଏପ୍ରିଲ ୧୯୪୬ରେ ଷ୍ଟାଫର୍ଡ କ୍ରିପ୍ସଙ୍କ ପାଖକୁ ଯେଉଁ ଚିଠି ମହତାବ ଲେଖିଥିଲେ ତାହା କିଛି ଏହିଭଳି ଥିଲା:

"ଆପଣ ଜାଣନ୍ତି ୨୬ଟି ଗଡଜାତକୁ ଓଡିଶା ପ୍ରଦେଶ ସହିତ ମିଶାଇବା ପାଇଁ ମୁଁ କେତେ ଆଗ୍ରହୀ। ମୁଁ ଆଶା କରେ ଆପଣ ଆପଣଙ୍କ ପ୍ରଭାବକୁ କାମରେ ଲଗାଇବା ସହିତ ସମ୍ପୃକ୍ତ କର୍ତ୍ତୃପକ୍ଷଙ୍କୁ ଏହି ନିଷ୍ପତ୍ତି ନେବା ପାଇଁ ନିର୍ଦ୍ଦେଶ ଦେବେ। ଏହା ଯେତେ ଶୀଘ୍ର ସମ୍ଭବ ହେବା ଉଚିତ। ମୋର ଅନୁଭବ ଯେ, ଯେଉଁମାନେ ଏହି କାଦୁଅରେ ଗୋଡ ଭର୍ତ୍ତି କରିଛନ୍ତି ସେମାନେ ସେଥିରୁ ବାହାରିବାକୁ ଚାହୁଁ ନାହାଁନ୍ତି। ଏଣୁ ଏହି

ସମସ୍ୟାକୁ ରାସ୍ତା ଉପରକୁ ଆଣିବାକୁ ହେଲେ କିଛି ଗୋଟାଏ ଆଖିଦୃଶିଆ ପଦକ୍ଷେପ ନିଆଯିବା ଉଚିତ୍। ଆମେ ଯେତେବେଳେ ସ୍ୱାଧୀନତା କଥା କହୁ ତା'ର ଅର୍ଥ ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ।"

ଯେହେତୁ କ୍ୟାବିନେଟ୍ ମିଶନ ଆଗରେ ଅନେକ ପ୍ରଶ୍ନ ଓ ପ୍ରସଙ୍ଗ ଥିଲା ଓଡିଶାର ସ୍ୱତନ୍ତ୍ର ପ୍ରସଙ୍ଗକୁ ଏହା ବିଚାରକୁ ନେଇପାରିନଥିଲା। ତେବେ ୧୯୪୬ ମସିହା ମେ ୧୬ ତାରିଖରେ କ୍ୟାବିନେଟ୍ ମିଶନ ପକ୍ଷରୁ ଯେଉଁ ବିଜ୍ଞପ୍ତି ଜାରି କରାଯାଇଥିଲା ସେଥିରେ ଭାରତର ରାଜାରାଜୁଡା ଅଂଚଳର ସମାଧାନ ପାଇଁ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଯିବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା। ଏଥିରେ ଆହୁରି ମଧ କୁହାଯାଇଥିଲା ଯେ, ପରସ୍ପର ବୁଝାମଣା ଭିତ୍ତିରେ ଏହି ମିଶ୍ରଣ ସମ୍ଭବ ହୋଇପାରିବ। ଓଡିଶାର ଶାସକମାନଙ୍କୁ ମହତାବ ଏ କଥା ବୁଝାଇବା ପାଇଁ ଅନେକ ଥର ଚେଷ୍ଟା କରିଥିଲେ ଯେ, ବୁଝାମଣା ଫଳରେ ଓ ରାଜ୍ୟଗୁଡିକ ଓଡିଶା ପ୍ରଦେଶରେ ମିଶିଲେ ଏଥିରେ ସମସ୍ତେ ଉପକୃତ ହେବେ। ନିଜେ ମହତାବ ବୁଝିଥିଲେ ଯେ, ଓଡିଶା ପ୍ରଦେଶ ସହିତ ଗଡଜାତର ମିଶ୍ରଣ ଉଭୟର ସାହାଯ୍ୟରେ ଆସିବ ଏବଂ ସମସ୍ତେ ଏହାଦ୍ୱାରା ଲାଭବାନ ହେବେ। ଏଣୁ ଓଡିଶା ପ୍ରଦେଶ ସହିତ ମିଶିବା ପାଇଁ ଏବଂ ଏକ ସାଧାରଣ ପ୍ରଶାସନିକ ବ୍ୟବସ୍ଥା ଅଧିନରେ ରହିବା ସକାଶେ ସେ ରାଜାମାନଙ୍କୁ ନିବେଦନ କରିଥିଲେ।

ପରିତାପର ବିଷୟ ଯେ, ଗଡଜାତ ଗୁଡିକ ଡ. ମହତାବଙ୍କର ଏହି ନିବେଦନକୁ ଭୃକ୍ଷେପ କରିନଥିଲେ। ବରଂ ସେମାନେ ୧୯୪୬ ଜୁଲାଇ ମାସରେ ଆଲିପୁରଠାରେ ଏକତ୍ରିତ ହୋଇ ଛତିଶଗଡ ଏବଂ ଓଡିଶାର ରାଜାରାଜାଡା ଅଂଚକୁ ନେଇ ଏକ କେନ୍ଦ୍ର ପ୍ରତିଷ୍ଠା ପାଇଁ ଉଦ୍ୟମ କଲେ। ତଥାପି ମହତାବ ଗଡଜାତର ମିଶ୍ରଣର ଆଶାକୁ ପରିତ୍ୟାଗ କରିନଥିଲେ। ୧୬ ଅକ୍ଟୋବର ୧୯୪୬ରେ ସେ ସମ୍ବଲପୁରରେ ପୁଣିଥରେ ଗଡଜାତ ମୁଖ୍ୟମାନଙ୍କ ସହିତ ଏକ ବୈଠକରେ ସାମିଲ୍ ହୋଇଥିଲେ। ଗଡଜାତ ଓ ନୂଆ ଓଡିଶା ପ୍ରଦେଶ ପାଇଁ ଗୋଟିଏ ପ୍ରଶାସନର ଆବଶ୍ୟକତା ଉପରେ ସେ ଗୁରୁତ୍ୱାରୋପ କରିଥିଲେ। ପ୍ରାୟ ୬ଘଣ୍ଟା ଧରି ଚାଲିଥିବା ଏହି ଆଲୋଚନାରେ ସେ ବିଭିନ୍ନ ପ୍ରସଂଗ ଯଥା, ଆଇନଶୃଙ୍ଖଳା, ଖାଦ୍ୟ ଓ ବସ୍ତ୍ର, ନଦୀ ପ୍ରଣାଳୀର ନିୟନ୍ତ୍ରଣ, ଯୋଗାଯୋଗ ବ୍ୟବସ୍ଥା, ସାଧାରଣ ସ୍ୱାସ୍ଥ୍ୟ ଏବଂ ଶିକ୍ଷାର ବିକାଶ ଏ ସମସ୍ତ ବିଷୟ ଉପରେ ଯୋର ଦେଇଥିଲେ।



୧୯୪୬ରେ ଶପଥ ଗ୍ରହଣ କରିଥିବା ମହତାବଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ବାମରୁ ନିତ୍ୟାନନ୍ଦ କାନୁନ୍‌ଗୋ, ଲିଙ୍ଗରାଜ ମିଶ୍ର ଓ ଦକ୍ଷିଣରେ ନବକୃଷ୍ଣ ଚୌଧୁରୀ

ତେବେ ଏହି ମାରାଥନ୍ ବୈଠକରୁ କୌଣସି ସୁଫଳ ବାହାରିନଥିଲା । ଓଡିଶାର ରାଜାମାନେ ନିଜ ନିଜ ସ୍ୱତନ୍ତ୍ର ପରିଚୟ ବଜାୟ ରଖିବା ପାଇଁ ଅଡି ବସିଲେ ଓ ଓଡିଶା ପ୍ରଦେଶ ସହିତ ମିଶିବା ପାଇଁ ରୋକ୍‌ଠୋକ୍ ମନାକରିଦେଲେ ।

ସ୍ୱାଧୀନତା ପରେ ଗଡଜାତ ମିଶ୍ରଣ ନେଇ ଓଡିଶାରେ ଦୁଇଟି ପରସ୍ପର ବିରୋଧି ଶକ୍ତି ମୁଣ୍ଡ ଟେକିଲା । ଗୋଟିଏ ପକ୍ଷ ମିଶ୍ରଣ ସପକ୍ଷରେ ଯୁକ୍ତି ବାଢ଼ିବା ବେଳେ ଅନ୍ୟ ପକ୍ଷ ରାଜାମାନଙ୍କୁ ନେଇ ମନ୍ତ୍ରଣାଳୟ ଗଢ଼ିବା ପାଇଁ ପରାମର୍ଶ ଦେଲେ । ତେବେ ମିଶ୍ରଣ ବିରୋଧି ଶକ୍ତିକୁ ନାକାମ କରିବାରେ ଡ. ମହତାବ ସଫଳ ହୋଇଥିଲେ ।

୧୯୪୭ ନଭେମ୍ବର ୨୦ ତାରିଖରେ ଦିଲ୍ଲୀରେ ତତ୍‌କାଳୀନ ରାଜ୍ୟ ମନ୍ତ୍ରଣାଳୟର ସଚିବଙ୍କ କୋଠରିରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ଏଥିରେ ମହତାବ ଓ

ସମ୍ବଲପୁରରେ ଆଞ୍ଚଳିକ କମିଶନର ଉପସ୍ଥିତ ଥିଲେ। ଏହି ସଭାରେ ୩ଟି କଥା ଉପରେ ଜୋରଦାର ଆଲୋଚନା ହେଲା। ପ୍ରଥମ, ପୂର୍ବାଞ୍ଚଳର ରାଜରାଜୁଡା ଅଂଚଳକୁ ନେଇ ଯେଉଁ ସମ୍ମିଳନୀ ବା କେନ୍ଦ୍ର ଗଠିତ ହୋଇଛି ତାହାକୁ ସ୍ୱୀକୃତି ଦିଆଯିବ ନାହିଁ। ଦ୍ୱିତୀୟ, ବି ଓ ସି ଶ୍ରେଣୀର ରାଜ୍ୟଗୁଡିକୁ ଗୋଟିଏ ଶାସନାଧିକ ହେବାକୁ କୁହାଯିବ ଓ ଡିସେମ୍ବର ୧୯୪୭ରେ ଏହି ବି ଓ ସି ଶ୍ରେଣୀର ରାଜ୍ୟ ଶାସକମାନଙ୍କ ଏକ ବୈଠକ କଟକରେ ବସିବ।

ସେତେବେଳେ ରାଜ୍ୟସମୂହର ମନ୍ତ୍ରୀ ଥିବା ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଗୃହ ବିଭାଗ ଦାୟିତ୍ୱରେ ଥିବା ଭିପି ମେନନ ୧୩ ଡିସେମ୍ବର ୧୯୪୭ରେ କଟକରେ ପହଞ୍ଚିଲେ। ତା'ପର ଦିନ ସେମାନେ ଓଡିଶା ରାଜାମାନଙ୍କୁ ଭେଟିଲେ। ଯେହେତୁ ନିଜ ନିଜ ରାଜ୍ୟରେ ଏକ ଦୃଢ଼ ସରକାର ଗଠନ କରିବା ପାଇଁ ସେମାନଙ୍କ ପାଖରେ ସମ୍ବଳ ନାହିଁ ତେଣୁ ସେମାନେ ଓଡିଶା ପ୍ରଦେଶ ସହିତ ମିଶିବା ପାଇଁ ଚାପ ପକାଇଥିଲେ। 'ହଁ ନାହିଁ' ପରେ ୨୫ଟି ଗଡଜାତର ମୁଖ୍ୟ ଏହି ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କରିଥିଲେ। କେବଳ ମୟୁରଭଂଜ ଏଥିରୁ ବାଦ ପଡିଥିଲା। ଯେହେତୁ ମୟୁରଭଂଜରେ କିଛି ଲୋକ ପ୍ରତିନିଧିଙ୍କୁ ନେଇ ଏକ ସ୍ୱତନ୍ତ୍ର ସରକାର ଗଠନ ହୋଇଥିଲା ମନ୍ତ୍ରୀମାନଙ୍କ ବିନା ଅନୁମତିରେ ଏହି ଚୁକ୍ତିରେ ସ୍ୱାକ୍ଷର କରିବା ସମ୍ଭବ ନୁହେଁ ବୋଲି ମୟୁରଭଂଜ ପକ୍ଷରୁ ଜଣାଇ ଦିଆଯାଇଥିଲା। ଚୁକ୍ତି ସ୍ୱାକ୍ଷର ହେବା ପରେ ତତ୍‌କାଳିନ ଓଡିଶା ସରକାରଙ୍କୁ ଏହି ୨୫ଟି ଗଡଜାତକୁ ନିଜ ଶାସନ ଅଧିନକୁ ଆଣିବା ପାଇଁ କ୍ଷମତା ଦିଆଗଲା।

୧୯୪୮ ମସିହା ଜାନୁଆରୀ ୧ ତାରିଖରୁ ଗଡଜାତ ମିଶ୍ରଣ ବିଧିବଦ୍ଧ ଭାବରେ ଅନୁଷ୍ଠିତ ହୋଇଥିଲା। ଯଦିଓ ଡ. ମହତାବ ଖରସୁଆଁ ଓ ଷଢ଼େଇକଳାକୁ ରଖିବା ପାଇଁ ଢ଼େର ଉଦ୍ୟମ କରି ବି ବିଫଳ ହୋଇଥିଲେ ଓ ଶେଷରେ ଏହା ବିହାରକୁ ଚାଲିଯାଇଥିଲା, ତଥାପି ଓଡିଶାର ଗଡଜାତ ମିଶ୍ରଣରେ ଡ. ହରେକୃଷ୍ଣ ମହତାବ ଯେଉଁ ଅବଦାନ ରଖିଯାଇଛନ୍ତି ତାହା ସବୁଦିନ ପାଇଁ ଉଲ୍ଲେଖନୀୟ ହୋଇ ରହିବ। ଯଦି ମହତାବ ନିଜେ ଏହି ନିଷ୍ଠାପର ଉଦ୍ୟମ କରିନଥାନ୍ତେ ହୁଏତ ଇତିହାସ ଅନ୍ୟ ପ୍ରକାରର ହୋଇଥାଆନ୍ତା।

*ଭୁବନେଶ୍ୱର*



# ୧୯୪୬ ନିର୍ବାଚନ ଓ ଗଡ଼ଜାତ ମିଶ୍ରଣରେ ଡ.ମହତାବଙ୍କ ଭୂମିକା

**ଡକ୍ଟର ଉଦ୍ଧବ ଚରଣ ନାୟକ**

ବ୍ରିଟିଶ ସରକାରଙ୍କ ନୂତନ ନୀତି ଅନୁଯାୟୀ ୧୯୩୭ ମସିହାରେ ଗଠିତ ଓଡ଼ିଶା ପ୍ରାଦେଶିକ ବ୍ୟବସ୍ଥାପକ ସଭାକୁ ତା ୧୪.୯.୧୯୪୫ରିଖରେ ଗଭର୍ଣ୍ଣ ସାର୍ ହଥର୍ଣ୍ଣ ଲୁଇସ୍ ଭାଙ୍ଗିଦେଲେ । ତା'ପରେ ତାଙ୍କର ବଦଳି ହୋଇଗଲା । ୧୯୪୬ ମସିହା ଏପ୍ରିଲ ୧ତାରିଖରେ ସାର୍ ଚନ୍ଦୁଲାଲ ତ୍ରିବେଦୀ ଓଡ଼ିଶାର ନୂତନ ଗଭର୍ଣ୍ଣର ଭାବରେ ଯୋଗଦାନ କଲେ । ୧୯୪୬ ମସିହା ଏପ୍ରିଲ ୪.୯ ତାରିଖ ଯାଏ ଓଡ଼ିଶା ବ୍ୟବସ୍ଥାପକ ସଭାର ନିର୍ବାଚନ ହେବାପାଇଁ ରାଜ୍ୟପାଳ ଘୋଷଣା କଲେ । ସେତେବେଳେ ଓଡ଼ିଶା ପ୍ରାଦେଶିକ ବ୍ୟବସ୍ଥାପକ ସଭାର ଆସନ ସଂଖ୍ୟା ଥିଲା ୬୦ । ଚାରିଜଣ ଗଭର୍ଣ୍ଣରଙ୍କ ଦ୍ୱାରା ମନୋନୀତ ଓ ୫୬ଜଣ ନିର୍ବାଚିତ ହେବାର ବ୍ୟବସ୍ଥା ରହିଲା । ଆଜିକାଲି ପରି ସେତେବେଳେ ଗଣଭୋଟ୍ ଜରିଆରେ ପ୍ରାର୍ଥୀ ନିର୍ବାଚିତ ହେଉନଥିଲେ । ଖଜଣା, ଚୌକିଦାରୀ ଟିକସ ଓ ଇନକମ ଟିକସ ଆଦିକୁ ଭିତ୍ତିକରି ଭୋଟ୍ ଦେବାର ଯୋଗ୍ୟତା ଠିକ୍ କରାଯାଇଥିଲା ।

ଓଡ଼ିଶା ପ୍ରଦେଶ କଂଗ୍ରେସ ତରଫରୁ ହରେକୃଷ୍ଣ ମହତାବ ଓ ବିଶ୍ୱନାଥ ଦାସଙ୍କ ଉପରେ ପ୍ରାର୍ଥୀ ଚୟନ ଓ ନିର୍ବାଚନ ଦାୟିତ୍ୱ ନ୍ୟସ୍ତ ହେଲା । ମହତାବବାବୁ ଓଡ଼ିଶାର ପ୍ରାର୍ଥୀ ଚୟନ ସମ୍ପର୍କରେ ସର୍ଦ୍ଦାର ପଟେଲଙ୍କ ସହ ପରାମର୍ଶ କରି ଚୂଡ଼ାନ୍ତ କରିଦେଲେ । ଯାହା ହେଉ କଂଗ୍ରେସ ଦଳ ଲାଭକଲା ୪୮ଟି ଆସନ । ସେଥିମଧ୍ୟରୁ ୩୭ଜଣ ନିର୍ଦ୍ୱନ୍ଦ୍ୱରେ

ନିର୍ବାଚିତ ହେବା ସ୍ଥଳେ ୧୧ଜଣ ନିର୍ବାଚନରେ ଜିତି ବିଧାନସଭାକୁ ଆସିଲେ । ବିରୋଧୀମାନେ ଲାଭକଲେ ମାତ୍ର ୯ଟି ଆସନ । ସେମାନଙ୍କ ମଧ୍ୟରେ ୪ଜଣ ସ୍ୱାଧୀନ, ୪ଜଣ ମୁସଲିମର ଓ ଜଣେ କମ୍ୟୁନିଷ୍ଟପାର୍ଟିର ସଭ୍ୟ ଅନ୍ତର୍ଭୁକ୍ତ ଥିଲେ ।

ଚାରିଜଣ ମନୋନୀତ ପ୍ରାର୍ଥୀ ଚୟନ ନିମନ୍ତେ ଗଭର୍ଣ୍ଣର ସାର ଚନ୍ଦୁଲାଲ ତ୍ରିବେଦୀ ମହତାବ ବାବୁଙ୍କ ମତ ଲୋଡ଼ିଲେ । ମହତାବବାବୁ ଗଭର୍ଣ୍ଣରଙ୍କୁ ପରାମର୍ଶ ଦେଲେ କି ଏଥିପାଇଁ ଏକ ନୀତି ନିର୍ଦ୍ଧାରଣ କରାଯାଇ ସଭ୍ୟ ମନୋନୀତ କଲେ କାହାର କୌଣସି ଆପତ୍ତି ରହିବନାହିଁ । ମହତାବବାବୁଙ୍କ ପରାମର୍ଶ ହେଲା, "ସମାଜସେବୀ, ସାହିତ୍ୟିକ ଓ ସାଂସ୍କୃତିକ କ୍ଷେତ୍ରରେ ସୁପରିଚିତ ବ୍ୟକ୍ତିମାନଙ୍କୁ ମନୋନୟନ କରାହେବ ଓ ସମାଜର ବିଭିନ୍ନ ଶ୍ରେଣୀର ପ୍ରତିନିଧିତ୍ୱ ପ୍ରତି ମଧ୍ୟ ଦୃଷ୍ଟି ଦିଆଯିବ ।" ମହତାବବାବୁଙ୍କ ଏହି ପ୍ରସ୍ତାବକୁ ଗଭର୍ଣ୍ଣର ଗ୍ରହଣ କରିନେଲେ । ସମାଜସେବୀ ସାହିତ୍ୟିକ ଲକ୍ଷ୍ମୀନାରାୟଣ ସାହୁ, କୋରାପୁଟର ସୁପରିଚିତ ଐତିହାସିକ ଜି.ରାମଦାସ (ତେଲଗୁ) ଓ ପାରଳାଖେମୁଣ୍ଡିର ସେରଙ୍ଗମିଶନର ଅଧ୍ୟକ୍ଷା ମିସ୍ ମନ୍‌ରୋଙ୍କ ନାମକୁ ମହତାବବାବୁ ସୁପାରିଶ କଲେ । ଆଉଜଣଙ୍କୁ ଗଭର୍ଣ୍ଣର ବାଛନ୍ତୁ ବୋଲି ମହତାବବାବୁ ପରାମର୍ଶ ଦେଲେ । ଫୁଲବାଣୀର ରେଭରେଣ୍ଡ ଇଭାନ୍ସଙ୍କୁ ଗଭର୍ଣ୍ଣର ମନୋନୀତ କଲେ । ଇଭାନ୍ସ ଥିଲେ ବ୍ରିଟିଶ ଶାସକଙ୍କର ପୁରା ସମର୍ଥକ ।

ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ କଂଗ୍ରେସର ବିପୁଳ ବିଜୟକୁ ଲକ୍ଷ୍ୟ କରି ବିରୋଧୀମାନେ ହତବାକ ହୋଇଗଲେ । ଏପ୍ରିଲ ୨୦ତାରିଖରେ କଂଗ୍ରେସର ବିଧାୟକ ଦଳର ବୈଠକ କଟକଠାରେ ଅନୁଷ୍ଠିତ ହେଲା । ୪୭ଜଣ ସଭ୍ୟଙ୍କ ମଧ୍ୟରୁ ୪୬ଜଣ ସଭ୍ୟ ଏହି ବୈଠକରେ ଉପସ୍ଥିତ ଥିଲେ । ସର୍ବସମ୍ମତିକ୍ରମେ ହରେକୃଷ୍ଣ ମହତାବ କଂଗ୍ରେସ ବିଧାୟକ ଦଳର ନେତା ନିର୍ବାଚିତ ହେଲେ । ତା ୨୩-୪-୧୯୪୬ରେ ନୂତନ ମନ୍ତ୍ରୀମଣ୍ଡଳ ଶପଥ ନେବାପାଇଁ ସ୍ଥିର ହେଲା । ସେ ନବକୃଷ୍ଣ ଚୌଧୁରୀ ଓ ନିତ୍ୟାନନ୍ଦ କାନୁନଗୋ ସହ ଆଲୋଚନା କରି ସ୍ଥିର କଲେ ଯେ ଗତାନୁଗତିକ ଭାବରେ ଶାସନ ଚଳାଇବା ଆମର ଲକ୍ଷ୍ୟ ହେବା ଉଚିତ ହେବନାହିଁ । ନିର୍ଦ୍ଦିଷ୍ଟ ବିକାଶର ଲକ୍ଷ୍ୟକୁ ଆଖିରେ ରଖି ଆମେ କାର୍ଯ୍ୟ କଲେ ଓଡ଼ିଶାର ବିକାଶ ସମ୍ଭବ ହୋଇପାରିବ । ଆମକୁ ନିରଳସ ଭାବରେ କାମ କରିବାକୁ ହେବ ।" ଏପ୍ରିଲ ୨୩ତାରିଖରେ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳ ଶପଥ ନେଲା । ମନ୍ତ୍ରିମଣ୍ଡଳରେ ତାଙ୍କୁ ମିଶାଇ ରହିଲେ ପାଞ୍ଚଜଣ ମନ୍ତ୍ରୀ ।

ମହତାବଙ୍କ ମନ୍ତ୍ରିମଣ୍ଡଳ ଶପଥ ଗ୍ରହଣ କରିବାର ପରଦିନ ସୌଜନ୍ୟଗତ ସାକ୍ଷାତ

ପାଇଁ ବିଭିନ୍ନ ବିଭାଗର ସେକ୍ରେଟାରୀ ଓ କଟକ କଲେକ୍ଟର ଆସି ପହଞ୍ଚିଲେ । ସେତେବେଳେ ସେକ୍ରେଟାରୀଏଟ୍ ଥାଏ କଟକ ସହରରେ ଆଜି ଯେଉଁଠି ସିଟି ହସ୍ପିଟାଲ୍ ହେଉଛି । ଏହି ସେକ୍ରେଟାରୀ ଓ କଲେକ୍ଟର ସମସ୍ତେ ଥିଲେ ବାହାର ଲୋକ । କଲେକ୍ଟର ଖାଁ ବାହାଦୂର ସୋହେବ ଖାଁ ଥିଲେ ବଡ଼ ଦୁର୍ଦ୍ଦାନ୍ତ ଅଧିକାରୀ । ଭାରତଛାଡ଼ ଆନ୍ଦୋଳନ ସମୟରେ ବଡ଼ ଉତ୍ସାହ ସହକାରେ ସେ କଂଗ୍ରେସକୁ ଧ୍ୱଂସ କରିପକାଇଥିଲେ । ତାଙ୍କ ଉପରେ ସମସ୍ତ କଂଗ୍ରେସ ଲୋକଙ୍କର ଥିଲା ରାଗ । ସେଭଳି ବ୍ୟକ୍ତି ମଧ ଆସି ପ୍ରଧାନମନ୍ତ୍ରୀ ମହତାବବାବୁଙ୍କ ପାଖରେ ପହଞ୍ଚିଲେ ସୌଜନ୍ୟମୂଳକ ସାକ୍ଷାତ ପାଇଁ ।

ଏହି ଦ୍ୱିତୀୟ ବିଧାନସଭାର ମାନ୍ୟବର ସଦସ୍ୟମାନେ ୧୯୪୬ ମସିହା ମଇମାସ ୨୭ତାରିଖରେ ଶପଥ ଗ୍ରହଣ କଲେ । ସେହିଦିନ ଦ୍ୱିତୀୟ ବିଧାନସଭାର ପ୍ରଥମ ବୈଠକ ବସିଥିଲା ରେଭେନ୍ସା କଲେଜର ହଲ୍‌ରେ । ଏହି ବୈଠକ ଦୁଇଦିନ ଧରି ଚାଲିଲା । କଂଗ୍ରେସ ଦଳର ବିପୁଳ ସଂଖ୍ୟାଗରିଷ୍ଠତା ଥିବା ଯୋଗୁଁ ଲାଲମୋହନ ପଟ୍ଟନାୟକ ଓ ଲକ୍ଷ୍ମୀବାଈ ସର୍ବସମ୍ମତିକ୍ରମେ ଯଥାକ୍ରମେ ବାଚସ୍ପତି ଓ ଉପବାଚସ୍ପତି ଭାବରେ ନିର୍ବାଚିତ ହେଲେ । ମନୋନୀତ ସଦସ୍ୟ ସମାଜସେବୀ ସାହିତ୍ୟିକ ଲକ୍ଷ୍ମୀନାରାୟଣ ସାହୁ ନିର୍ବାଚନ ପରିଚାଳନା କରିଥିଲେ । ଉପବାଚସ୍ପତି ଶ୍ରୀମତୀ ଲକ୍ଷ୍ମୀବାଈ ହେଉଛନ୍ତି ଭି.ଭି.ଗିରିଙ୍କ ଭଉଣୀ । ସେ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଆସିଥିଲେ ମହିଳା ସଂରକ୍ଷିତ ଆସନରୁ । ଜଣାଯାଏ ଭି.ଭି.ଙ୍କର ମଧ ଇଚ୍ଛା ଥିଲା ସେତେବେଳେ ମହତାବଙ୍କ ମନ୍ତ୍ରିମଣ୍ଡଳରେ ଯୋଗଦେବାପାଇଁ । ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ଦାୟିତ୍ୱ ଗ୍ରହଣ କରିବା ପରେ ସ୍ପଷ୍ଟ ଭାବରେ ଚିନ୍ତା କରିଥିଲେ (୧) ପ୍ରଦେଶ ସହିତ ଗଡ଼ଜାତଗୁଡ଼ିକର ମିଶ୍ରଏ (୨) ବନ୍ୟା ନିୟନ୍ତ୍ରଣ ପାଇଁ ମହାନଦୀ ଯୋଜନାର କାର୍ଯ୍ୟକାରୀତା ଓ (୩) ପ୍ରଦେଶ ପାଇଁ ନୂତନ ରାଜଧାନୀ ନିର୍ମାଣ ଆଦି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାକୁ ହେବ । ଏ ସବୁ କାର୍ଯ୍ୟକ୍ରମକୁ ସଫଳ କରିପାରିଲେ ଯାଇ ପ୍ରଦେଶର ବିକାଶ ସମ୍ଭବ ହୋଇପାରିବ ।

ମହତାବବାବୁ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିସାରିବା ପରେ ତାଙ୍କର ପୂର୍ବର ରାଜନୀତିକ ଶତ୍ରୁ କନିକାର ରାଜା ବାହାଦୂର ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ସହ ସାକ୍ଷାତ କରି ପ୍ରଦେଶ ଶାସନ କ୍ଷେତ୍ରରେ ସହଯୋଗ କରିବା ପାଇଁ ଅନୁରୋଧ କଲେ । ମହତାବବାବୁଙ୍କର ଏପରି ବ୍ୟବହାରରେ ରାଜା ସାହେବ ଅଭିଭୂତ ହୋଇପଡ଼ିଲେ । ପୂର୍ବ କଥା ଭୁଲି ସେ ସବୁପ୍ରକାର ସାହାଯ୍ୟ କରିବେ ବୋଲି ପ୍ରଧାନମନ୍ତ୍ରୀ ମହତାବଙ୍କୁ ପ୍ରତିଶ୍ରୁତି ପ୍ରଦାନ କଲେ ।

ପ୍ରକୃତରେ ଏହା ହେଉଛି ମହତାବ ବାବୁଙ୍କର ମହାନ ଭାବ । ସେ ଆଶାତୀତ ସଂଖ୍ୟାଗରିଷ୍ଠତା ହାସଲ କରି ମଧ ବିରୋଧୀମାନଙ୍କ ସହଯୋଗ ଭିକ୍ଷା କରିଥିଲେ । ମହତାବବାବୁ ଚିନ୍ତା କରିଥିଲେ ପ୍ରଦେଶ ସମସ୍ତଙ୍କର, ବିରୋଧୀଙ୍କର ଆଉ ଶାସକଦଳର । ମହତାବବାବୁ ଏକଛତ୍ର ଶାସନ ଚଳାଇବା ପାଇଁ ଆଦୌ ଭାବିନଥିଲେ କି ତାଙ୍କର ଇଚ୍ଛା ତାହା ନଥିଲା ।

ମହତାବାବୁ କ୍ଷମତାକୁ ଆସିବାର ସପ୍ତାହକ ମଧ୍ୟରେ ସମସ୍ତ ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରିଦେଲେ । ଆଜବୀନ କାରାଦଣ୍ଡ ଭୋଗୀ ଦେଶାନ୍ତରୀ ହୋଇଥିବା ୩୨ଜଣ ବନ୍ଦୀଙ୍କ ଦଣ୍ଡାଦେଶକୁ ମଧ୍ୟ ଉଠାଇଦେଲେ । ଇଣ୍ଡିଆନ୍ ନ୍ୟାସନାଲ୍ ଆର୍ମି (ଆଇଏନ୍ଏ) ଚାକିରି କରିଥିବା ମେଡିକାଲ ଅଫିସରମାନଙ୍କୁ ପ୍ରାଦେଶିକ ମେଡିକାଲ୍ ସର୍ଭିସରେ ଚାକିରୀ ଦେବାର ସୁବନ୍ଦୋବସ୍ତ କରିଦେଲେ । ମଇମାସରେ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ଏକ ସାମ୍ବାଦିକ ସମ୍ମିଳନୀର ଘୋଷଣା କଲେ । ୧୯୪୨-୪୩ ମସିହା ଭାରତଛାଡ଼ ଆନ୍ଦୋଳନ ସମୟରେ ଗାଁଗଣ୍ଡାର ନିରୀହ ଲୋକମାନଙ୍କଠାରୁ ଆଦାୟ ହୋଇଥିବା ଜୋରିମାନା ସେମାନଙ୍କୁ ଫେରଶଇ ଦିଆଯିବ । ଏହି ମର୍ମରେ ସେ ସମସ୍ତ ଜିଲ୍ଲାପାଳମାନଙ୍କୁ ଆଦେଶନାମା ପଠେଇଦେଲେ ।

ଭାରତର ସ୍ୱାଧୀନତା ଅଳ୍ପ ସମୟ ବାକି ବୋଲି ଜଣାପଡୁଥାଏ । ୧୯୪୬ ମସିହା ଜୁନମାସରେ ଭାଇସରାୟ କେନ୍ଦ୍ରରେ ଏକ ଦୃଢ ସରକାର ଗଠନ ନିମନ୍ତେ ପ୍ରସ୍ତାବ ରଖିଲେ । ଭାଇସରାୟ ଏହି କେନ୍ଦ୍ରସରକାରରେ ବିଭିନ୍ନ ରାଜ୍ୟର ଦକ୍ଷ ନେତାମାନଙ୍କୁ ସାମିଲ କରିବା ପାଇଁ ଚିନ୍ତା କଲେ । ଏହି ପରିପ୍ରେକ୍ଷୀରେ ସେ ବିଭିନ୍ନ ରାଜ୍ୟର କଂଗ୍ରେସ ଓ ମୁସଲିମ ଲିଗର ନେତାମାନଙ୍କ ପାଖୁ ଚିଠି ଲେଖିଲେ । ହରେକୃଷ୍ଣ ମହତାବଙ୍କ ପାଖକୁ ମଧ୍ୟ ଏପରି ଏକ ଅନୁରୋଧ ପତ୍ର ଭାଇସରାୟଙ୍କ ପାଖରୁ ଆସି ପହଞ୍ଚିଲା । ହେଲେ ମହତାବାବୁ ଓଡ଼ିଶାର ବିଭିନ୍ନ ସମସ୍ୟା ଓ ହିତ ଦୃଷ୍ଟିରୁ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ସର୍ଦ୍ଦାର ପଟେଲଙ୍କ ସହ ଏ ବିଷୟରେ ଆଲୋଚନା କରି କହିଲେ, ଭବିଷ୍ୟତରେ ଓଡ଼ିଶା ଗଡ଼ଜାତ ରାଜ୍ୟମାନଙ୍କରେ ସମସ୍ୟା ଦେଖାଦେଇପାରେ । ଏଣୁ ମହତାବ ବାବୁଙ୍କ ପ୍ରସ୍ତାବରେ କେନ୍ଦ୍ରୀୟ ନେତାମାନେ ରାଜି ହୋଇଗଲେ । ଫଳରେ ତା ୨୨-୬-୧୯୪୬ରେ ମହତାବବାବୁ ଭାଇସରାୟଙ୍କୁ ଚିଠି ଲେଖିଲେ କି, "ବ୍ୟକ୍ତିଗତ ଅସୁବିଧା କାରଣରୁ ସେ କେନ୍ଦ୍ରରେ ଏହି ମଧ୍ୟବର୍ତ୍ତୀକାଳୀନ ସରକାରରେ ଯୋଗଦେଇପାରିବେ ନାହିଁ ।

ଏହାପରେ ସମ୍ବିଧାନ ସଭା ନିମନ୍ତେ ସଭ୍ୟ ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହେଲା ।

ଓଡ଼ିଶାରୁ ୯ଜଣ ସଭ୍ୟ ନିର୍ବାଚିତ ହେବା କଥା । ୧୭.୭.୧୯୪୬ରେ ଏଥିପାଇଁ ନିର୍ବାଚନ ହେଲା । ସମୁଦାୟ ୨୭ଜଣ ପ୍ରାର୍ଥୀ ଏଥିପାଇଁ ଥିଲେ । କିନ୍ତୁ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠ ଦଳ ଥିବାରୁ ୯ଜଣଙ୍କୁ ସର୍ବସମ୍ମତି ଓଡ଼ିଶାରୁ ପଠାଗଲା । ସେମାନେ ହେଲେ ନିଜେ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ, ଶାନ୍ତନୁ କୁମାର ଦାସ, ମାଳତୀ ଚୌଧୁରୀ, ରାଜକୃଷ୍ଣ ବୋଷ, ବୋଧିରାମ ଦୁବେ, ନନ୍ଦକିଶୋର ଦାସ, ଭୁବନାନନ୍ଦ ଦାସ, ବିଶ୍ୱନାଥ ଦାସ ଓ ଲକ୍ଷ୍ମୀ ନାରାୟଣ ସାହୁ ।

୧୯୪୭ ଅଗଷ୍ଟ ୧୫ତାରିଖରୁ ଡିସେମ୍ବର ମାସ ପର୍ଯ୍ୟନ୍ତ ଏହି ଚାରିମାସରେ ଅନେକ ଗଡ଼ଜାତ ସ୍ୱାଧୀନ ରାଜ୍ୟ ଭାବରେ ଭାରତ ସରକାରଙ୍କ ସହ କାରବାର ଆରମ୍ଭ କରିଦେଲେ । ଓଡ଼ିଶାରେ ସମ୍ବଲପୁରରୁ କଟକ ଯାଏ ବସ୍‌ରେ ଆସିବା ପାଇଁ ତିନୋଟି ଲାଇସେନ୍ସ ଓ ପରମିଟର ଆବଶ୍ୟକ ହେଲା । ଏପରିକି ଓଡ଼ିଶା ସରକାରଙ୍କ ଉଡ଼ାଜାହାଜ ବିନା ଅନୁମତିରେ ଗଡ଼ଜାତ ରାଜ୍ୟମାନଙ୍କ ଉପରେ ଉଡୁଛି ବୋଲି ଗଡ଼ଜାତ ରାଜାମାନେ ଆପତ୍ତି କଲେ । ଏ ସମ୍ପର୍କରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ସମାଧାନ ଆଣିବା ପାଇଁ ଚେଷ୍ଟା କଲେ । ଏହି ସମୟରେ ନୀଳଗିରି ଗଡ଼ଜାତ ରାଜ୍ୟରେ ପ୍ରଶାସନିକ ସଂକଟ ଦେଖାଦେଲା । ପ୍ରଜାମଣ୍ଡଳର କର୍ମୀମାନଙ୍କ ଉପରେ ରାଜା ପ୍ରତିଶୋଧ ନେବା ପାଇଁ ରାଜ୍ୟର ଆଦିବାସୀ ଅପରାଧୀମାନଙ୍କୁ ପ୍ରବର୍ତ୍ତାଇଲେ । ସେହି ଆଦିବାସୀମାନେ ରାଜାର ଆଦେଶରେ ପ୍ରଜାମଣ୍ଡଳ କର୍ମୀଙ୍କ ଘରଦ୍ୱାର ପୋଡ଼ିଲେ, ଲୁଣ୍ଠନ କଲେ, ପ୍ରଧାନମନ୍ତ୍ରୀ ଏହାର ପୂର୍ଣ୍ଣ ବିବରଣୀ ଲେଖି ଭାରତର ପ୍ରଧାନମନ୍ତ୍ରୀ ତଥା ଘରୋଇ ମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କୁ ଲେଖି ଜଣାଇଦେଲେ ଏବଂ କିପ୍ରକାର ପଦକ୍ଷେପ ନିଆଯିବ ବୋଲି ଶୀଘ୍ର ଜଣାଇବା ପାଇଁ ଅନୁରୋଧ କଲେ । ସର୍ଦ୍ଦାର ପଟେଲ ଅନୁମତି ଦେଲେ "ଶୀଘ୍ର ନୀଳଗିରି ରାଜ୍ୟର ଦାୟିତ୍ୱ ଗ୍ରହଣ କର ।" ସେହି ସମୟରେ ମିଃ.ପିଅରମ୍ୟାନ ଥାଆନ୍ତି ପୋଲିସ ଆଇଜି । ଡିଭିଜନାଲ୍ କମିଶନର ଥାଆନ୍ତି ନୀଳମଣି ସେନାପତି । ପ୍ରଧାନମନ୍ତ୍ରୀ ମହତାବ ନୀଳଗିରି ଆନ୍ଦୋଳନ ଦମନ ନିମନ୍ତେ ସୈନ୍ୟ ଚାଳନା କରିବା ପାଇଁ ଆଇଜିଙ୍କୁ ଆଦେଶ ଦେଲେ । ଓଡ଼ିଶା ମିଲିଟାରୀ ଫୌଜ ମାର୍ଚ୍ଚପାଷ୍ଟ କରି ନୀଳଗିରି ରାଜ୍ୟ ଅଭିମୁଖେ ଯାତ୍ରା କଲେ । ବାଟରେ ସୈନ୍ୟବାହିନୀଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ଫଳରେ ଓଡ଼ିଶା ପ୍ରାଦେଶିକ ସରକାର ୧୯୪୭ ମସିହା ନଭେମ୍ବର ୧୪ତାରିଖରେ ନୀଳଗିରି ରାଜ୍ୟକୁ ନିଜ ଅକ୍ତିଆରକୁ ଆଣିଲେ ।

ନୀଳଗିରି ଅକ୍ତିଆର ଗଡ଼ଜାତ ମିଶ୍ରଣ ପାଇଁ ବାଟ ଦେଖାଇଲା । ଏତିକି 'ଏ' ଶ୍ରେଣୀର

ଗଡ଼ଜାତ ରାଜାମାନେ ନିଜର ସାର୍ବଭୌମତ୍ୱ ରକ୍ଷା କରିବା ପାଇଁ ଲିଖିତ ଆକାରରେ କେନ୍ଦ୍ରସରକାରଙ୍କୁ ଜଣାଇଦେଲେ ।

ନୀଳଗିରି ଅକ୍ତିଆର ପରେ ଆଉ କାଳ ବିଳମ୍ବ ନକରି ପ୍ରଧାନମନ୍ତ୍ରୀ ମହତାବ ସର୍ଦ୍ଦାର ପଟେଲଙ୍କୁ ନିମନ୍ତ୍ରଣ କଲେ ଶୀଘ୍ର ଓଡ଼ିଶା ଆସିବା ପାଇଁ । ସେହି ଚିଠିରେ ସେ ଉଲ୍ଲେଖ କଲେ ଗଡ଼ଜାତ ମିଶ୍ରଣ ପାଇଁ ନୀଳଗିରି ଆମକୁ ବାଟ ଦେଖାଇଛି । ସର୍ଦ୍ଦାର ପଟେଲ ଓଡ଼ିଶାର ପ୍ରଧାନମନ୍ତ୍ରୀ ମହତାବଙ୍କ ନିମନ୍ତ୍ରଣ ରକ୍ଷା କଲେ । ୧୯୪୭ ଡିସେମ୍ବର ୧୩ତାରିଖରେ ଓଡ଼ିଶା ଆସିଲେ ଏକ ସ୍ୱତନ୍ତ୍ର ବିମାନରେ । ତାଙ୍କ ସହ ଥିଲେ ତାଙ୍କ ସଚିବ ଭି.ଶଙ୍କର, ଆଇସିଏସ୍ ଭି.ପି.ମେନନ, ଆଉ ବିଭାଗ ସଚିବ ସୁନ୍ଦରମ ଓ ଅନ୍ୟାନ୍ୟ ସରକାରୀ ଅଧିକାରୀ । ଭୁବନେଶ୍ୱର ବିମାନଘାଟୀଠାରୁ କଟକ ପର୍ଯ୍ୟନ୍ତ ସର୍ଦ୍ଦାର ପଟେଲଙ୍କୁ ଲୋକେ ଯେଉଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପ୍ରଦାନ କଲେ ତାହା ଅତୁଳନୀୟ ଓ ଅବର୍ଣ୍ଣନୀୟ । ହଜାର ହଜାର ନରନାରୀ ଯେପରି ସମ୍ବର୍ଦ୍ଧନା ଜଣାଇଲେ ଏପରି କେବେ କାହା ପାଇଁ ହୋଇନଥିଲା । ସର୍ଦ୍ଦାର ପଟେଲଙ୍କ ସହ ମହତାବାବୁ କାରରେ ବସିଥାଆନ୍ତି । ଲୋକେ ପ୍ଲାକାର୍ଡ ଧରି ସ୍ଲୋଗାନ ଦେଇ ଗଡ଼ଜାତ ମିଶ୍ରଣ ସମ୍ପର୍କରେ ଧ୍ୱନିମାନ ଦେଇଥାଆନ୍ତି । ସର୍ଦ୍ଦାର ପଟେଲ ଏପରି ସମ୍ବର୍ଦ୍ଧନାରେ ଅଭିଭୂତ ହୋଇ ପଡୁଥାଆନ୍ତି । ଏ ସବୁର ବନ୍ଦୋବସ୍ତ ପୂର୍ବରୁ ମହତାବଙ୍କ ନିର୍ଦ୍ଦେଶରେ ପ୍ରସ୍ତୁତ ହୋଇଥାଏ ।

ସର୍ଦ୍ଦାର ପଟେଲ ରାଜ୍ୟପାଳଙ୍କ ଅତିଥି ନହୋଇ ପ୍ରଧାନମନ୍ତ୍ରୀ ମହତାବଙ୍କ ଘରେ ତାଙ୍କର ବ୍ୟକ୍ତିଗତ ଅତିଥି ହେଲେ । ଭି.ପି.ମେନନ ହେଲେ ନୀଳମଣି ସେନାପତିଙ୍କ ଅତିଥି । ସୁନ୍ଦରମ ହେଲେ ଓଡ଼ିଶାର ଆଇନସଚିବ ନରସିଂହମ୍‌ଙ୍କ ଅତିଥି । ଗଡ଼ଜାତ ମିଶ୍ରଣ ପାଇଁ ଓଡ଼ିଶା ସରକାରଙ୍କ ତରଫରୁ ମେମୋରାଣ୍ଡମ ପ୍ରସ୍ତୁତ ହୋଇନଥାଏ । ସର୍ଦ୍ଦାର ପଟେଲଙ୍କ ସହ ଆଲୋଚନା ହେବାପରେ ମେମୋରଣ୍ଡମ ପ୍ରସ୍ତୁତ ହୋଇ ଛପା ହେବାର ବନ୍ଦୋବସ୍ତ ହୋଇଥାଏ । ମେମୋରଣ୍ଡମ ପ୍ରସ୍ତୁତ ଦାୟିତ୍ୱରେ ଥିଲେ ମୁଖ୍ୟ ଶାସନ ସଚିବ ବି.ସିମୁଖାର୍ଜୀ ଓ ସୋହନି । ସନ୍ଧ୍ୟାରେ ସର୍ଦ୍ଦାର ପଟେଲ ଓ ମହତାବବୁଙ୍କ ମଧ୍ୟରେ ସାରଗର୍ଭକ ଆଲୋଚନା ହେଲା । ମିଶ୍ରଣ କିପରି କରିବାକୁ ହେବ, ଯଦି ରାଜାମାନେ ରାଜି ନହୁଅନ୍ତି ତେବେ ସେଥିପାଇଁ କି ପଦକ୍ଷେପ ନିଆଯିବ ସମସ୍ତ କଥା ମହତାବବାବୁ ସର୍ଦ୍ଦାର ପଟେଲଙ୍କୁ ଚିକିନିଖି କରି ବୁଝାଇଦେଲେ । ମହତାବବାବୁ ପ୍ରତ୍ୟେକ ରାଜାଙ୍କର ଓ ପ୍ରତ୍ୟେକ ପ୍ରଜାମଣ୍ଡଳର ପୂର୍ବପର ବିବରଣୀ ପ୍ରଦାନ କରି ଏକ

ପୁସ୍ତକା ପ୍ରସ୍ତୁତ କରିଥିଲେ । ତାକୁ ସେ ସର୍ଦ୍ଦାର ପଟେଲଙ୍କୁ ଦେଖାଇଲେ । ଏହାପରେ ସର୍ଦ୍ଦାର ପଟେ ଭି.ପି.ମେନନ ଓ ସୁନ୍ଦରମ୍‌ଙ୍କୁ ଡାକ ପଠାଇଲେ । କୌଣସି ଯୁକ୍ତି ଓ ଆଲୋଚନା ନକରି ସର୍ଦ୍ଦାର ପଟେଲ କହିଲେ, ବର୍ତ୍ତମାନ ଗଡ଼ଜାତ ମିଶ୍ରଣ ଛଡ଼ା ଅନ୍ୟ କିଛି ଉପାୟ ହିଁ ନାହିଁ । ଏଥିପାଇଁ କାଗଜ ପ୍ରସ୍ତୁତ କରିବାକୁ ହେବ ।

ଦିଲ୍ଲୀରେ ଭି.ପି.ମେନନ ଗଡ଼ଜାତଗୁଡ଼ିକର ମିଶ୍ରଣ ନହୋଇ ଶାସକମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାକୁ ହେବ ବୋଲି ଏକ ଯୋଜନା ପ୍ରସ୍ତୁତ କରି ଆଣିଥିଲେ । ତାକୁ ସର୍ଦ୍ଦାର ପଟେଲ ପୂର୍ବରୁ ବି ମଞ୍ଜୁର କରିଥିଲେ । ସେ କଥା ମେନନ ସର୍ଦ୍ଦାରଙ୍କୁ ସ୍ମରଣ କରାଇଦେଲେ । ହେଲେ ସର୍ଦ୍ଦାର ଜୋର୍ ଦେଇ କହିଲେ, "ମୁଁ ଗଡ଼ ପରିବର୍ତ୍ତନ କରୁଛି, ମିଶ୍ରଣ ହେବ ହିଁ ହେବ ।" ମେନନ କୌଣସି ଯୁକ୍ତି ନକରି ସୁନ୍ଦରମ୍‌ଙ୍କୁ ଧରି କାଗଜପତ୍ର ପ୍ରସ୍ତୁତ କରିବା ପାଇଁ ସେଠାରୁ ଚାଲିଗଲେ । ଏହାପରେ ପ୍ରଧାନମନ୍ତ୍ରୀ ମହତାବ ମୁଖ୍ୟ ଶାସନ ସଚିବଙ୍କୁ କହିଲେ, ସଂପୂର୍ଣ୍ଣ ମିଶ୍ରଣ ଦାବି କରି ଆଜି ରାତି ଆଠଟାରେ ମେମୋରଣ୍ଡମ ପ୍ରସ୍ତୁତ କର । ମିଃ ମୁଖାର୍ଜୀ ମେମୋରଣ୍ଡମ ତିଆରି କରି ରାତି ୧୧ଟା ବେଳେ ଆଣି ପ୍ରଧାନମନ୍ତ୍ରୀ ମହତାବଙ୍କୁ ଦେଖାଇଲେ । ତା'ପରେ ସୋହନି ତାକୁ ରାତାରାତି ସରକାରୀ ମୁଦ୍ରଣାଳୟରେ ଛପାଇ ତା'ପରଦିନ ଅର୍ଥାତ ୧୪ତାରିଖ ସକାଳେ ଆଣି ରାଜଭବନଠାରେ ସଭାସ୍ଥାନରେ ଉପସ୍ଥିତ ହୋଇଗଲେ ।

ପୂର୍ବରୁ ଯେଉଁ ମେମୋଣ୍ଡମ ପ୍ରସ୍ତୁତ ହୋଇଥିଲା ସେଥିରେ ଗଡ଼ଜାତ ରାଜାମାନଙ୍କର ସୀମିତ ସ୍ୱାଧିକାର ଦେବା କଥା ଉଲ୍ଲେଖ ଥିଲା । ହେଲେ ଚତୁର ଓ ବିଚକ୍ଷଣ ମହତାବବାବୁ ତାକୁ ଚିରିଦେଇ ମୁଖ୍ୟ ଶାସନ ସଚିବ ବି.ସି.ମୁଖାର୍ଜୀଙ୍କୁ ଧରି ଯେଉଁ ମେମୋରଣ୍ଡମ ପ୍ରସ୍ତୁତ କରି ସୋହନିଙ୍କ ଦ୍ୱାରା ଛପାଇ ଆଣିଥିଲେ ସେଥିରେ ଟୋଟାଲ ଇଣ୍ଟିଗେସନ କଥା ହିଁ ଉଲ୍ଲେଖ ଥିଲା ।

୧୯୪୭ ମସିହା ଡିସେମ୍ବର ୧୪ତାରିଖ ସକାଳେ ସର୍ଦ୍ଦାର ପଟେଲ ଆସି କଟକ ରାଜଭବନ (ବର୍ତ୍ତମାନ ଶିଶୁଭବନ) ଠାରେ ପହଞ୍ଚିଲେ । ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ ରାଜାମାନଙ୍କ ସହ କଥାବାର୍ତ୍ତା କରୁଥିବାବେଳେ ମହତାବାବୁ ପ୍ରସ୍ତୁତ କରିଥିବା ମେମୋରାଣ୍ଡଟି ବାଣ୍ଟି ଦିଆଗଲା । ରାଜାମାନେ ଏହି ସ୍ମାରକପତ୍ର ପଢ଼ି ବିସ୍ମିତ ହୋଇଗଲେ । ପରସ୍ପର ମଧ୍ୟରେ ଚୁପୁରୁ ଚାପର ହେଲେ । ରାଜାମାନଙ୍କ ମଧ୍ୟରେ କେତେଜଣ ଉତ୍‌ଥାପନ କଲେ କି, "ପୂର୍ବ ସ୍ମାରକପତ୍ର କେଉଁ ଆଡ଼େ ଗଲା । ଏହା ତ

ତାହା ନୁହେଁ ସେଥିରେ ରାଜାମାନଙ୍କର ସୀମିତ ସ୍ୱାଧିକାର କଥା ଉଲ୍ଲେଖ ଥିଲା । ଏଥିରେ ତ ତାହା ନାହିଁ ।" ବଡ଼ ଚତୁରତାର ସହ ପ୍ରଧାନମନ୍ତ୍ରୀ ମହତାବ ଏହି ପରିସ୍ଥିତି ଦୃଢତାର ଓ ସାହସିକତାର ମୁକାବିଲା କରିବା ପାଇଁ ବଦ୍ଧପରିକର ହେଲେ । ରାଜାମାନଙ୍କ ମୁହଁରୁ ଏପରି ମନ୍ତବ୍ୟ ଶୁଣି ସର୍ଦ୍ଦାର ପଟେଲ ମହତାବଙ୍କ ଆଡ଼କୁ ଚାହିଁଲେ । ପ୍ରଧାନମନ୍ତ୍ରୀ ମହତାବ ହଠାତ ଉଠିପଡ଼ି ମାତ୍ର ଆଠଗୋଟି ଇଂରେଜ ଶବ୍ଦ ଉଚ୍ଚାରଣ କଲେ ଓ ସଙ୍ଗେ ସଙ୍ଗେ ବସିପଡ଼ିଲେ । ତାହା ହେଲା, "ଆଇ ଆମ୍ ନଟ୍ ଆୱାର ଅଫ୍ ଏନି ଅଦର ମେମୋରଣ୍ଡମ୍" । ବାସ୍ ଏତିକିରେ ଘଟଣାର ପରିସମାପ୍ତି ଘଟିଥିଲା । ଷଢ଼େଇକଳା ରାଜା ୨୦.୧୧.୧୯୪୭ରେ ଦିଲ୍ଲୀଠାରେ ହୋଇଥିବା ଆଲୋଚନାର ବିଷୟକୁ ଘାଣ୍ଟିବାକୁ ପୁଣି ଚେଷ୍ଟା କଲେ ଯେଉଁଥିରେ କି ସୀମିତ ସ୍ୱାଧିକାର କଥା ଉଲ୍ଲେଖ ଥିଲା । ସର୍ଦ୍ଦାର ତାଙ୍କୁ ସତର୍କ କରାଇ ଦେଇ କହିଲେ, "ପଛକଥା ପଛକୁ ପକାଇ ଦିଅନ୍ତୁ ।" ବର୍ତ୍ତମାନ ଓଡ଼ିଶା ସରକାରଙ୍କର ଯେଉଁ ମୋମରଣ୍ଡ ଆପଣଙ୍କୁ ଦିଆଯାଇଛି- ସେଥିରେ ଉଲ୍ଲେଖ ଅଛି ପୂରା ମିଶ୍ରଣ, ସେହି ଅନୁସାରେ କାର୍ଯ୍ୟ କରନ୍ତୁ ।

କେନ୍ଦ୍ର ଆଇନ ସଚିବ ମିଶ୍ରଣ ଦଲିଲର ବିଷୟବସ୍ତୁ ପଢ଼ି ଶୁଣାଇ ଦେଲେ । ସେହିଦିନ ଅଧିକାଂଶ ରାଜା ମହାରାଜା ମିଶ୍ରଣ ଦଲିଲରେ ଦସ୍ତଖତ କରି ଦେଲେ । ଯେଉଁମାନେ ରହିଲେ ସେମାନେ ୧୫ତାରିଖ ସକାଳୁ ହସ୍ତଖତ କରିଦେଲେ । କଳାହାଣ୍ଡି ମହାରାଜା ସବୁଠାରୁ ଡେରିରେ ସବା ଶେଷରେ ଦସ୍ତଖତ କଲେ । ଏଥିପାଇଁ ସର୍ଦ୍ଦାର ପଟେଲଙ୍କୁ ଅପେକ୍ଷା କରିବାକୁ ପଡ଼ିଲା । କେବଳ ରହିଗଲେ ମୟୁରଭଞ୍ଜ ରାଜା । ସେ କହିଲେ ମୋ ରାଜ୍ୟର ମନ୍ତ୍ରିମଣ୍ଡଳ ସହ ଏ ବିଷୟରେ ପରାମର୍ଶ କରିନି । କାରଣ ସେମାନଙ୍କ ହସ୍ତରେ ରାଜ୍ୟର ସମସ୍ତ ଶାସନ ଦାୟିତ୍ୱ ଅର୍ପଣ କରିସାରିଛି । ସର୍ଦ୍ଦାର ପଟେଲ ମୟୁରଭଞ୍ଜ ରାଜାଙ୍କ ଇଚ୍ଛା ସମ୍ମାନ ଜଣାଇଲେ । ପରେ ମୟୁରଭଞ୍ଜ ରାଜା ଇଚ୍ଛା ପ୍ରକାଶ କରିବାରୁ ୧.୧.୧୯୪୯ରେ ସରକାରଙ୍କ ତରଫରୁ ପ୍ରତିନିଧି ପଠାଇ ସର୍ଦ୍ଦାର ପଟେଲ ତାଙ୍କଠାରୁ ଦସ୍ତଖତ କରାଇଲେ । ସର୍ଦ୍ଦାର ପଟେଲ ଗଡ଼ଜାତ ମିଶ୍ରଣ କରିସାରି ୧୫.୧୨.୧୯୪୮ରେ ଓଡ଼ିଶା ତ୍ୟାଗ କଲେ । ସର୍ଦ୍ଦାର ପଟେଲ ଦେଶ ମିଶ୍ରଣରେ ଡକ୍ଟର ମହତାବଙ୍କ ଭୂମିକା ସମ୍ପର୍କରେ 'ବିଗନିଙ୍ଗ ଅଫ୍ ଦି ଏଣ୍ଡ' ପୁସ୍ତକର ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି ।

ସର୍ଦ୍ଦାର ପଟେଲଙ୍କ ମତରେ, "ଡକ୍ଟର ମହତାବ ଥିଲେ ଦେଶ ମିଶ୍ରଣ ନାଟକର ସଫଳ ନାୟକ । ଯଦିଓ ମୁଁ ତାଙ୍କ ସ୍ୱପ୍ନ ସାକାର କରିବାରେ ସାହାଯ୍ୟ କରିଛି, ମହତାବଙ୍କ



ବାରବାଟୀ ଦୁର୍ଗ ସାମ୍ନା କିଲ୍ଲାପଡ଼ିଆଠାରେ ଜାତୀୟ ପତାକା ଉତ୍ତୋଳନ ।
ଡକ୍ଟର ହରେକୃଷ୍ଣ ମହତାବଙ୍କ ସହିତ ରାଜ୍ୟପାଳ କୈଳାସନାଥ କାଟ୍‌ଜୁ (୧୯୪୭)

ନିଷ୍ଠାପରତା ଓ ଅଧ୍ୟବସାୟ ଦ୍ୱାରା ହିଁ ଏହା ସଫଳ ହୋଇପାରିଥିଲା ।

ଡ.ହରେକୃଷ୍ଣ ମହତାବଙ୍କ ପରି ଜଣେ ଦୃଢମନା, ଚତୁର, ବୁଦ୍ଧିମାନ, କୁଟନୀତିଜ୍ଞ ଓ ଜାତୀୟବାଦୀ ନେତା କ'ଣ କେବେ ଓଡ଼ିଶାର ଜନ୍ମ ନେବେ ? ନା ଓଡ଼ିଶାବାସୀ ଏପରି ଜଣେ ମୁଖ୍ୟମନ୍ତ୍ରୀ ଆଉ ପାଇ ନିଜକୁ ଗର୍ବିତ ମନେ କରିବେ ।

ସାଇ ଦିଗ୍‌ବଳୟ, ଇ.୧୯୨
ହାଉସିଂବୋର୍ଡ କଲୋନୀ, ବରମୁଣ୍ଡା, ଭୁବନେଶ୍ୱର



# ହରେକୃଷ୍ଣ ମହତାବଙ୍କ ଓଡ଼ିଆ କାବ୍ୟ-କବିତା

ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିଠାରୁ ଅଷ୍ଟମ ଦଶନ୍ଧି ପର୍ଯ୍ୟନ୍ତ ଭାରତବର୍ଷରେ ସର୍ବଜନବିଦିତ, ଉଲ୍ଲେଖଯୋଗ୍ୟ ସମାଜ-ରାଜନୀତିକ ଘଟଣାବଳୀସହ ପଠିତ ଏବଂ ଉଚ୍ଚାରିତ ବ୍ୟକ୍ତିତ୍ୱ, ହରେକୃଷ୍ଣ ମହତାବ। ରାଷ୍ଟ୍ରଗଠନଠାରୁ ନବଓଡ଼ିଶା ନିର୍ମାଣ ପରିପ୍ରେକ୍ଷୀରେ ଗଡ଼ଜାତ ରାଜ୍ୟଗୁଡ଼ିକର ସ୍ୱାତନ୍ତ୍ୟ ଲୋପ ତଥା ମିଶ୍ରଣ ପ୍ରକ୍ରିୟା ପରିକଳ୍ପନାରେ ତାଙ୍କର ଇଟାଲୀ ଏକତ୍ରିକରଣକାରୀ ବିସ୍‌ମାର୍କୀୟ ବିଚାରବୁଦ୍ଧି, ଐତିହାସିକ, ରାଜନୀତି ବିଜ୍ଞାନୀ ଓ ସମ୍ମାନସ୍ପଦ ରାଜନେତାମାନଙ୍କଦ୍ୱାରା ସ୍ୱୀକୃତ ଏବଂ ମାନିତ। ତାଙ୍କ ଜୀବନର କାର୍ଯ୍ୟାବଳୀ ଏତେବାଗର ଓ ସ୍ଥିତିର ଯେ; ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାରେ ଯାହାଯାହା ହୋଇଛି ତହିଁର କେଉଁ ଗୋଟିକୁ ବି ହରେକୃଷ୍ଣ ମହତାବଙ୍କ ନାମୋଲ୍ଲେଖ ଅଥବା ଉଚ୍ଚାରଣ ବ୍ୟତିରେକ ଆଲୋଚନା କରିବା ସମ୍ଭବପର ନୁହେଁ। ଓଡ଼ିଆ ଭାଷା ସାହିତ୍ୟ, ସାମ୍ବାଦିକତା, ଗୀତ, ନାଟକ, ଚଳଚିତ୍ର, କ୍ରୀଡ଼ାଦିପ୍ରତି ତାଙ୍କର ଅବଦାନ କେତେ କ'ଣ ଓ କିପରି ତାହା ଅନେକତ୍ର ବହୁଧା ଚର୍ଚ୍ଚିତ। ନିଜଲେଖାଲେଖି ଜରିଆରେ ସେ ଓଡ଼ିଆ କାବ୍ୟକବିତାଧାରାକୁ ଯାହାକିଛି ଦେଇଯାଇଛନ୍ତି ତାହା ସ୍ୱଳ୍ପମାତ୍ରାରେ ଆଲୋଚନା ହୋଇଥିବାରୁ ଓ ତାଙ୍କ କାବ୍ୟ, କବିତା ବହିଗୁଡ଼ିକ ନମିଳୁଥିବାରୁ ଏବର ବୁଦ୍ଧିଜିବିମାନେ ସେ ସଂପର୍କରେ ଅବହିତ ନଥିବା ଜଣାପଡୁଛି।

ଏଇ ମାସର ପ୍ରଥମ ସପ୍ତାହ(ନଭେମ୍ବର'୨୦୧୫)ରେ ହରେକୃଷ୍ଣଙ୍କରଏକ କାବ୍ୟ "ଉତ୍କଳ ସାହିତ୍ୟ ସମାଜ"ର ପାଠାଗାରାରେ ଖୋଜୁଥିବାବେଳେ ଜଣେ ଅଧ୍ୟାପକ ପଚାରିଲେ, 'ହରେକୃଷ୍ଣ ମହତାବ କ'ଣ କବିତା ଲେଖିଛନ୍ତି!' ବିସ୍ମିତ ହେଲିନାହିଁ, କାରଣ ଯେନି ଘଣ୍ଟାକେଟା ନିମିତ୍ତ ମନ ବଳିଲା ନାହିଁ। ଯୋଉକଥା ଖୋଜୁଥିଲି ତାହା ପାଇଗଲି। ଛାତ୍ରଜୀବନରେ ଖୁବ୍ ସମ୍ଭବତଃ ବିଂଶ ଶତାବ୍ଦୀର ସପ୍ତମ/ଅଷ୍ଟମ ଦଶନ୍ଧିବେଳେ ହରେକୃଷ୍ଣ ମହତାବଙ୍କ ରଚିତ ଓ ମୋଦ୍ୱାରା ପଠିତ ଦି/ତିନିଟି କବିତା ସ୍ମୃତି ସଞ୍ଚିତ ଖଣ୍ଡିତ ଆକୃତିରେ ବାରମ୍ବାର ମନକୁ ଖୁଂପା ମାରୁଥିଲା। ସେଦିନ ପାଠାଗାରାରେ ସେଗୁଡ଼ିକପାଇ ଉଲ୍ଲସିତ ହେଲି; ଉଦ୍ଧାର କରୁଛି 'ଗଣତନ୍ତ୍ର ଏକ ନାଟକ' ଉକ୍ତିର ବ୍ୟବହୃତ କବିତାର ପଂକ୍ତିକୁ।

ହରେକୃଷ୍ଣ ମହତାବଙ୍କ ଭାଷାରେ-

କିପରି ଜାଣିଲ କବି<br>
ଏତେ କାଳ ପରେ<br>
ସ୍ୱାଧୀନ ଭାରତେ<br>
ଗଣତନ୍ତ୍ର ନାଟକରେ<br>
ବେଲାଳ ଭୂମିକା<br>
ହେବ ମୁଖ୍ୟ ଅଭିନୟ।<br>
ତୁମର ସାଧନା ଧନ୍ୟ,<br>
ଲେଖନୀ ସାର୍ଥକ। (ବେଲାଳସେନ-ଆନନ୍ଦ ସନ୍ଧାନେ-୧୯୮୧,ପୃ-୯୭)

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ କବିତା ନୂଆରୂପ ଓ ନିଆରା ବକ୍ତବ୍ୟରୀତିରୁ ଅଣପାରଂପରିକ ବୋଲି ସୂଚିତ ହୋଇଛି। ପାରଂପରିକ ହେବାରେ କେଉଁ ଗୌରବ! କବିତା କାହିଁକି ଯେକୌଣସି କଳା-କୃତି ହେଉଛି କଳାକାରର ନଟସତ୍ତା କ୍ରିଡ଼ିତ ଛାୟାଭିବ୍ୟକ୍ତି। କବି ମହତାବଙ୍କ ' ଛାୟା ପଥର ଯାତ୍ରୀ' କବିତା ଏହି ପ୍ରସଙ୍ଗରେ ସ୍ମରଣକୁ ଆସିବା ସ୍ୱଭାବିକ। ଏହି କବିତା 'ପ୍ରଚୀନଦୀ ତୀରରେ ଲିଖିତ' ବୋଲି କବି ସୂଚାଇଛନ୍ତି। ଏହି କବିତାରେ କୀତ୍ତିରୂପିଣୀର ନାରୀଙ୍କର ଛାୟାଛନ୍ନ ଆବିର୍ଭାବ ଘଟିଛି। କାବ୍ୟନାୟକଙ୍କୁ କୀତ୍ତିନାରୀ ଏ କବିତାରେ ଯାହା କହିଛନ୍ତି ତାହା ସତେଯେମିତି ହରେକୃଷ୍ଣଙ୍କ ନିଜ ମନର କଥା। ତାହା ଏହିପରି;



ରାଜାଜୀ ଓ କାଟ୍‌ଜୁଙ୍କ ସହ ଡକ୍ଟର ମହତାବ

ପ୍ରାଚୀର ସଭ୍ୟତା ଗଲା, ନାହିଁ ମୋର ଦୁଃଖ
କୋଣାର୍କ ମନ୍ଦିର ଗଲା, ନୁହେଁ ମୁଁ ଚିନ୍ତିତ ।
ଚିନ୍ତିତ ମୁଁ ଜାଣିବାକୁ ଅଛି କିଏ ଆଉ

କହିବ ଉତ୍ସାହେ ଗଲାକଥା ଚାଲିଯାଇ,
"ଗଢିବି କୋଣାର୍କ ପୁଣି ବହାଇବି ପ୍ରାଚୀ
ଗଢିବ ବିଶାଳ କୀର୍ତ୍ତି ପୁଣି ନୂଆ କରି ।
(ଛାୟା ପଥର ଯାତ୍ରୀ- ଛାୟାପଥର ଯାତ୍ରୀ-୧୯୫୬,ପୃ-ସାତ)

ଇଜିପ୍ଟରେ ପ୍ରବାହିତ 'ନାଇଲ ନଦୀର ତୀରେ' (ଝଙ୍କାର- ଅକ୍ଟୋବର-୧୯୫୫) କବିତାରୁ କବି ମହତାବଙ୍କ ମନର ଭାବନାକୁ ଲକ୍ଷ୍ୟ କରାଯାଉ;

ପଡ଼ିଛି ଏ ରାଜପଥ ଆଦି ଅନ୍ତ ନାହିଁ
ଯାଇଛନ୍ତି ସବୁ ଚାଲି ଯିବି ମଧ ମୁହିଁ ।
ଯିବିକି ସରିବା ପରି ଅଜଣା ଅଶୁଣା ?
ଭାଗ୍ୟଦେବ ! ସତକରି କହ ମୋରଭାଗ୍ୟ,
ଗଲାପରେ ରହିଥିବଯାହା ଲୋକମନେ
ଯାଇଛି ଏ ପଥେ ବୋଲି କରୁଥିବେ ମନେ ?

କବତାରୁ କବିର ଜୀବନ ଅଥବା ଜୀବନୀ ଜାଣିହେବ ରୋମାଣ୍ଟିକ ପରଂପରାବୋଲି କେହି କେହି କହିଥାନ୍ତି । କିନ୍ତୁ ସାହିତ୍ୟ ସହିତ ଜୀବନୀର ସଂପର୍କ ନିତ୍ୟକାଳର କଥା । ଜୀବନୀ ଭିତରୁ କବି ଜୀବନ ଧର୍ମ ଲକ୍ଷ୍ୟ କରାଯାଇପାରେ ହେଲେ ଯାକୁ ଆଳକରି କେହି କେବେ କାହାରି ସୃଷ୍ଟିକୁ ତାଙ୍କ ନାମବାଚି ବିଶେଷଣରେ ପ୍ରକାଶ କରନନ୍ତି ନାହିଁ । ଯେପରି ସେକ୍ସପିୟରିୟାନ, ମିଲଟନିକ୍ ଅଥବା ରାଧାନାଥୀ କବିତା କହିବା ପଛରେ ଯେଉଁ ବ୍ୟଞ୍ଜନା ପ୍ରଚ୍ଛନ୍ନ ତହିଁର ଅବବୋଧ କବିଙ୍କ ଦୃଷ୍ଟି ସ୍ୱତନ୍ତ୍ର୍ୟ ଓ ନିଆରା ଅଭିବ୍ୟକ୍ତି ରୀତିରୁ ପ୍ରତିପନ୍ନ ହୋଇଥାଏ । ପ୍ରଥମେ ଯେଉଁ "ବେଲାଳସେନ" କବିତାରୁ ଦୁଇଟି ପଦ ଉଦ୍ଧାର କରାଯାଇଛି । ସେହି କବିତା ମହତାବ କବିତାର ଦୃଷ୍ଟାନ୍ତ ଯୋଗ୍ୟ । ସ୍ୱାଧୀନତା ପରବର୍ତ୍ତୀ କାଳରେ ପୁରାଣର ଚରିତ୍ର ଅଥବା ଘଟଣା କବିମାନଙ୍କ ପୁନଃମୂଲ୍ୟାୟିତ ଦୃଷ୍ଟିଭଙ୍ଗୀର ଭାବ-ଭାଷ୍ୟ ଆକାରରେ ପ୍ରକାଶପାଇ ଓଡ଼ିଆ କବିତା ପଠନରେ ନୂଆ ରୁଚିବୋଧ ଆସିଛି ପାଠକମାନଙ୍କର । ଏହି ଧାରାରେ 'ବେଲାଳସେନ କବିତା ଏକ ଗଣ୍ୟକୃତି ସାରଳା ମହାଭାରତର ବେଲାଳସେନଙ୍କୁ ଓଡ଼ିଆ ପାଠକମାନେ ଜାଣନ୍ତି । ନାଗରାଜା ବାସୁକିଙ୍କ କନ୍ୟା ବେଲାବଳୀ ଗର୍ଭରୁ ଭୀମଙ୍କ ଔରସରେ ଜନ୍ମ ଗ୍ରହଣ କରିଥିଲା

ଦୁର୍ଦ୍ଧସ ପୁତ୍ର ବେଲାଳସେନ। ସେ ତୀରଚାଳନାରେ ପାରଂଗମ ଥିଲା। ଗୋଟିଏ ଦିନରେ ମହାଭାରତ ଯୁଦ୍ଧଶେଷ ହୋଇଯାଇଥାନ୍ତା ତା କରାମତିରେ। ଶ୍ରୀକୃଷ୍ଣ ଚତୁରତା ପୂର୍ବକ ତା ଶିର କମଳ ଭିକ୍ଷା କଲେ ତାହା ହେଲା ବେଲାଳ ଚାହିଁଲା ତା ମସ୍ତକ ଜୀବନ୍ତ ରହିବ, ସେ ଦେଖିବ ମହାଭାରତ ଯୁଦ୍ଧ। ତଥାସ୍ତୁ କଲେ କୃଷ୍ଣ। ବେଲାଳସେନର ମସ୍ତକ ସ୍ଥାପନ କରାଗଲା ମହାଭାରତ ଯୁଦ୍ଧପାଇଁ ସ୍ଥାପନ କରାଯାଇଥିବା ଶୁଭସ୍ତମ୍ଭର ଅଗ୍ରଭାଗରେ। ଏ କଥାଟି ଓଡ଼ିଆ ଭାଷା-ସାହିତ୍ୟର ଆଦ୍ୟ ସ୍ଥପତି ସାରଳା ଦାସଙ୍କ କଳ୍ପନାରୁ ଉଦ୍ଭୁତ। କବି ହରେକୃଷ୍ଣ ମହତାବ୍ "ବେଲାଳସେନ" କବିତାର ଆରମ୍ଭରେ ସାରଳାଦାସଙ୍କ କୃତିତ୍ୱକୁ ପ୍ରସଂଶା କରିଛନ୍ତି। ନୀତି ପ୍ରଚାରକ ଭୀଷ୍ମ ଦୁର୍ନୀତି ପକ୍ଷରେ ସେନାପତି, ଉଭୟପକ୍ଷର ଗୁରୁ ଦ୍ରୋଣ ଗୋଟିଏ ପକ୍ଷ ସମର୍ଥନ କରନ୍ତି। ସତ୍ୟବାଦୀ ଯୁଧିଷ୍ଠିର ସ୍ୱର୍ଥପାଇଁ ମିଥ୍ୟାର ଆଶ୍ରୟୀ, କୃଷ୍ଣ କପଟୀ ଏହିମାନେ ମହାଭାରତରେ ଚରିତ୍ର। ଯଦି ସେ କାଳରେ ରେଡ଼ିଓ ସୁବିଧା ଥାଆନ୍ତା ଆଜିପରି ତାହା ଭରଣପୋଷଣକାରୀଙ୍କର ନିର୍ଲଜ ପ୍ରଚାର ଚଳାଇଥାନ୍ତା। ଏବର ସମାଜରେ ଯୁବକ ସକ୍ରିୟ ଜୀବନ୍ତ ଭାବାପନ୍ନତାରୁ ବଞ୍ଚିତ। ସେମାନେ ଭାବୋଚ୍ଛ୍ୱାସ ବର୍ଦ୍ଧିତ। ବେଲାଳସେନ ଭଳି ସେମାନଙ୍କ ମୁଣ୍ଡ ବିକା ହୋଇଯାଇଛି।ସ୍ୱାର୍ଥପାଇଁ ସତ୍ୟ ମିଥ୍ୟା ସବୁର କଥାକୁ ଶୁଣେ ଆଧୁନିକ କାଳର ବେଲାଳ। ସେ ଗୋଟିଏ ନୁହେଁ, ବରଂ ସହସ୍ର ସଂଖ୍ୟକ। ସମକାଳର ଯୁବଶକ୍ତିକୁ ଗଣତନ୍ତ୍ରର ନାଟକରେ ଚଳୁଥିବା ମିଥ୍ୟାଭିନୟକୁ ବିରୋଧ କରିବା ପାଇଁ କବିଙ୍କ ଆହ୍ୱାନ ପ୍ରତୀକଧର୍ମୀ ରୀତିରେ ପ୍ରକାଶିତ। ସମ୍ଭବତଃ କବିତାଟି ଜରୁରୀକାଳୀନ ପରିସ୍ଥିତି (୧୯୭୫-୭୬) ସମୟରେ ରଚିତ। ଏହି କାଳରେ ତାଙ୍କ ରଚିତ 'ଜନ୍ମଦିନ' କବିତା ପ୍ରକାଶ ପାଏ୧୯୭୬ ମସିହାର ଜାନୁଆରୀ ସଂଖ୍ୟା 'ଝଙ୍କାରରେ'। ଏହି କବିତାବେଳେ ଲେଖାଯାଏ "ଗତ ନଭେମ୍ବର ୨୧ ତାରିଖଦିନ ଡ଼କ୍ଟର ମହତାବ ୭୬ବର୍ଷ ପୂର୍ଣ୍ଣକରି ୭୭ବର୍ଷରେ ପଦାର୍ପଣ କଲେ। ତାଙ୍କର ଜନ୍ମତିଥିରେ ଭାରତର ବିଭିନ୍ନ ପ୍ରାନ୍ତରୁ ଓ ଓଡ଼ିଶାର ପୁରପଲ୍ଲୀରୁ ଅଜସ୍ର ଶୁଭେଚ୍ଛା ବାର୍ତ୍ତାପାଇ ଓ ତାଙ୍କର ଜନ୍ମଦିନ ବିଭିନ୍ନ ସ୍ଥାନରେ ପାଳିତ ହେଉଥିବା ସମ୍ବାଦପାଇ ତାଙ୍କ ମନରେ ଯେଉଁ ପ୍ରତିକ୍ରିୟା ହୋଇଥିଲା ତାକୁ ଏହି କବିତାରେ ସେ ଲିପିବଦ୍ଧକରି ଭଂଜନଗରରୁ ତାଙ୍କ ପୁତ୍ର ଶ୍ରୀମାନ ଭର୍ତ୍ତୃହରିଙ୍କ ପାଖକୁ ପଠାଇଥିଲେ"... କବିତାର ଉପସଂହାର ସ୍ୱୀକାରୋକ୍ତିର ମାର୍ମିକ ଅଭିବ୍ୟକ୍ତିରେ ରସୋଚ୍ଛଳ,



ଜୀନଦର୍ଶନ ଗୁଂଫିତ; ଅଥଚ ସହଜବୋଧ୍ୟ। ଯେପରି;

ମାତୃଗର୍ଭ ଶ୍ମଶାନ ମଝିରେ
ମନୁଷ୍ୟର ମୂଲ୍ୟସିନା ତା'ର କାର୍ଯ୍ୟଘେନି।
କାର୍ଯ୍ୟାକାର୍ଯ୍ୟ ବିଚାରର ବେଳ
ଶୁଦ୍ଧକର୍ମ ସରିଲା ଉତ୍ତରୁ।।

ମରଣାନ୍ତେ ଜଣାସିନା ଭଲ ଅବା ମନ୍ଦ
ଆଗରୁ ଅସ୍ଥିର କିଁପା ଜନ୍ମଟାକୁ ଘେନି ?
ମୃତ୍ୟୁହୀନ ଏ ଜୀବନ, ଅସୀମ କାହାଣୀ ତା'ର
ମରଣ ତ ମାତ୍ର ଏକ ଅଧ୍ୟାୟ ସମାପ୍ତି।
ଅଧ୍ୟାୟ ଶେଷରେ ସିନା ଭଲ-ମନ୍ଦ ଗଳ୍ପର ବିଚାର
ସେ ପର୍ଯ୍ୟନ୍ତ ଧୈର୍ଯ୍ୟଧରି ପଢ଼ିବାକୁ ହେବ
ଅନ୍ୟଥା ସମୀକ୍ଷାହେବ

ଅବାସ୍ତବ, ଅବାନ୍ତର, ନିରର୍ଥକ ମଧ। (ପୃ-୮୦୦,ଝଙ୍କାର) କବି ମହତାବଙ୍କ ଦୃଷ୍ଟିରେ ମରଣ ଜୀବନର ଶେଷ ସୋପାନ ନୁହେଁ। ବରଂ ଜୀବନର ଗୋଟିଏ ଅଧ୍ୟାୟ ସମାପ୍ତି ହେଉଛି ମୃତ୍ୟୁ। ତାଙ୍କ ଭାବଦୃଷ୍ଟିରେ 'ପୁନରପି ଜନମ'ର ବ୍ୟଞ୍ଜନା ନାହିଁ, ନାହିଁ ମଧ ' କରିଅଛ ମରଣକୁ ଅମୃତ ସୋପାନ'ର ଅଧ୍ୟାତ୍ମ୍ୟ ଅନୁଚିନ୍ତା, ଅଛି ଜୀବନଗତିର ସ୍ୱାଭାବିକତା, ଜୀବନକୁ ଅନୁଭବିକାର, ବୁଝିବାର ପ୍ରାଞ୍ଜଳତା- ଏହା ହିଁ କବି ମହତାବଙ୍କ ସର୍ଜନ ଦର୍ଶନରେ ସ୍ୱତନ୍ତ୍ରତା ।

୧୯୭୯ ମସିହାବେଳକୁ ସେ ଲେଖିଛନ୍ତି ' ଉଠା ଦୋକାନୀର ନୋଟିସ'କବିତା, ସେକାଳରେ ଏ କବିତା ପଢାଳି ଗମ୍ଭୀର ଜଣାପଡ଼ିଛନ୍ତି। ସେଦିନ ଏ ଲେଖକ କବତାଟିକୁ ପଢ଼ି ଯେପରି ଅଥୟ ଅନୁଭବ କରିଥିଲା ଆଜି ତାହା ନା ବଚନରେ ନା ଲେଖାରେ ପ୍ରକାଶ କରିହେବ। ଜୀବନ ବଞ୍ଚୁଥିବା ବ୍ୟକ୍ତି ପାଇଁ ଜୀବନଭୂମି ହୋଇଥାଏ ରଂଗମଞ୍ଚ ସଦୃଶ୍ୟ। ଜୀବନଧାରୀ ମାତ୍ରକେ ଅଭିନେତା/ଅଭିନେତ୍ରୀ। ବ୍ରାହ୍ମକବି ମଧୁସୂଦନ ରାଓଙ୍କ ପକ୍ଷେ ଜୀବନ ହେଉଛି ସ୍ରୋତ। ଜୀବନଧାରୀ କୁଟାଖିଅଟେ। ଭାଗବତକାରଙ୍କ ଭାଷାରେ

'ଆୟୁଷ ଦିନୁଦିନ ତୁଟେ/ଜଳ ଯେସନେ ଛିଦ୍ର ଘଟେ।। କବିବର ରାଧାନାଥ ଏଇ ସ୍ୱରକୁ ଟିକେ ବଦଳାଇକରି ଲେଖନ୍ତି, 'ଭଙ୍ଗା ଘଟୁ ଆହା ସଲିଳ ଯେସନ/ ସରି ଯାଉଅଛି ଆୟୁ ପ୍ରତିକ୍ଷଣ" ପୁଣି ମହାଯାତ୍ରା ମହାକାବ୍ୟରେ ରାଧାନାଥ ରାୟଙ୍କର ସେହି ପୁସ୍ତକଲବ୍ଧ ଅନୁଭବ ପଦ ମେଳେ- " ଏ ଜୀବ ନୁହଁଇ ସ୍ଥିର, ସ୍ଥିରଟି ମରଣ/ ମାଟିର ଏ ଘଟ ନିଶ୍ଚେ ମିଶିବ ମାଟିରେ,"। କିନ୍ତୁ ହରେକୃଷ୍ଣ ଧାରକରା ଜୀର୍ଣ୍ଣଭାବ ଓ ଶବ୍ଦ ବ୍ୟବହାରକାରୀ କବି ନୁହଁନ୍ତି। ଯୁଗୋପଯୋଗିତା କବିତାର ସୌଷ୍ଠବ ଓ ଯୁଗୋପଯୋଗୀ ହେବା କବି ପ୍ରତିଭାର ଯଥାର୍ଥ ବିକାଶ ଏବଂ କଥିତ ଭାଷାକୁ ଶିଷ୍ଟ ରୁଚିର ବିଜ୍ଞାନ ସମ୍ମତ ଯାଥାର୍ଥ ପ୍ରଦାନ କରିବାର କଳା। କବି ନିଜ ଜୀବନ ନିର୍ବାହକୁ 'ଉଠାଦେକାନୀ' ମେଟାଫରରେ ପ୍ରକାଶ କରିଛନ୍ତି। ସତ୍ୟ ଆପେକ୍ଷିକ ନୁହେଁ, ଋତ ଓ ନିୟତ। ଜୀବନ ସତ୍ୟ କରୁଣ ଭାବାପନ୍ନତାର ରାମାୟଣ ନତୁବା ମହାଭାରତ। ପିତାତ ଚିରକାଳ ଦୁଃଖୀ। ରାମଙ୍କ ବିରହରେ ଦଶରଥଙ୍କ ଭଳି କାନ୍ଦିକାନ୍ଦି କଷ୍ଟକପାଇବ ନତୁବା ଧୃତରାଷ୍ଟ୍ରଭଳି ପୀଡ଼ିତ ହେବ। ଉଠାଦେକାନୀ ତ ସ୍ୱୟଂ କବି; ହରେକୃଷ୍ଣ ମହତାବ। କବିତାର ପ୍ରଥମ ପଂକ୍ତିରୁ କବିଙ୍କ ଲକ୍ଷ୍ୟ ଦୁର୍ବୋଧ ରହେନାହିଁ-

ଯାତରା ଭାଙ୍ଗିଲା ଗହଳ କମିଲା
ସରିଲା ଏଇଠି ମେଳା
ଦୋକାନ ଉଠାଇ ସେପାରିକି ଯିବି
କୂଳେ ଲାଗିଲାଣି ଭେଳା।

ଏଥର ଦୋକାନୀକୁ ନେବାପାଇଁ ଭେଳା ଲାଗିଲାଣି। ବିକ୍ରିବଟା ବନ୍ଦ କରିବାକୁ ହେବ। ଯିବାକୁ ପ୍ରସ୍ତୁତ ହେବେ-

ତେଣୁ ଏ ନୋଟିସ୍ ଦେଇଛି ସଭିଙ୍କୁ
ସମସ୍ତେ ହୁଅନ୍ତୁ ସଦୟ
ଉଠା ଦୋକାନୀଙ୍କୁ ବନ୍ଧାବନ୍ଧି ପାଇଁ
ଦିଅନ୍ତୁ ଟିକିଏ ସମୟ ।
କବି ବୁଝିଥିଲେ;
ଜୀବନଟା ଲିଗ୍‌ମେଚ ପ୍ରତି ମନୁଷ୍ୟର



ପାର୍ଲାମେଣ୍ଟର ସେଣ୍ଟ୍ରାଲ୍ ହଲ୍‌ଠାରେ ସମ୍ବିଧାନ ପ୍ରଣୟନ ସଭାରେ
ମୌଲାନା ଆଜାଦଙ୍କ ସହ ଡକ୍ଟର ମହତାବ

ଆରମ୍ଭ ହୋଇଛି ଖେଳ ଯୌବନ ଆରମ୍ଭୁଁ(ମାତ୍ରମିନିଟିକେ)

ଖେଳୁଆଡ଼ ମନୋବୃତ୍ତିର କବି ମହତାବ କବିତା ଗୁଡ଼ିକରେ ଜୀବନାନୁଭବ ସମୂହକୁ ନିଜସ୍ୱ ସ୍ୱତନ୍ତ୍ର ଚାହାଣି ଏବଂ ଅବବୋଧର ଚମତ୍କାରିତାରେ ଗୋଳେଇ ପୋଳେଇ ରସୋଚ୍ଛଳ ଅଭିବ୍ୟକ୍ତି ଦେଇଛନ୍ତି। ସେ 'ସାଧନାର ପଥେ' (ପରିବର୍ଦ୍ଧିତ ସଂସ୍କରଣ ୧୯୭୨)ରେ ଲେଖିଛନ୍ତି। " ଓଡ଼ିଶାର ସର୍ବମୁଖୀ ଉନ୍ନତି ସାଧନ- ସାହିତ୍ୟର ପ୍ରଗତିବିନା ସମ୍ଭବ ନୁହେଁ।(ପୃ-୨୯୯) ସେ ଅସହଯୋଗ ଆନ୍ଦୋଳନରେ ଯୋଗଦେବାକାଳରୁ ସମ୍ବାଦ-ସାହିତ୍ୟ ରଚନା ଓ ଜାତୀୟତାବାଦୀ ସାହିତ୍ୟ ପଢିବାରେ ମନୋଯୋଗୀ ଥିଲେ। 'ଅମୃତ ଅନୁଭବ'ରେ ଅନ୍ନପୂର୍ଣ୍ଣା ମହାରଣା ଲେଖିଛନ୍ତି କବି ମହତାବ ସେ କାଳରେ ଦ୍ୱିଜେନ୍ଦ୍ର ଲାଲ ରାୟଙ୍କ ନୁରବାହନ, ମେବାର ପତନ ଆଦି ନାଟକ ଆଣନ୍ତି ପଢନ୍ତି ଓ ଅନ୍ନପୂର୍ଣ୍ଣା ସେହି ବହି ପଢିବାର ସୁଯୋଗ ପାଆନ୍ତି। ସେତେବେଳେ ସେ ସାମୟିକ

କବିତା ଲେଖୁଥିଲେ।୧୯୪୨ ମସିହା ଅଗଷ୍ଟ ମାସଠାରୁ ୧୯୪୫ମସିହା ଅପ୍ରେଲ ମାସ ପର୍ଯ୍ୟନ୍ତ ହରେକୃଷ୍ଣ ଅହମ୍ମଦ ନଗର ଫୋର୍ଟରେ ବନ୍ଦୀ ହୋଇ ରହିଥିଲେ। ସେହି ସମୟରେ ସେ ତିନୋଟି କାବ୍ୟ ଓ ତିନୋଟି ଉପନ୍ୟାସ, ବହୁ ଛୋଟ ଛୋଟ କବିତା ଲେଖିବା ଛଡ଼ା ଓଡ଼ିଶା ଇତିହାସ ଲେଖିବା ଆରମ୍ଭ କରିଥିଲେ। ତିନୋଟି କାବ୍ୟ ମଧ୍ୟରେ ଚାରିଚକ୍ଷୁ ପଲାସି ଅବସାନେ ଓ ଆତ୍ମଦହନ ରହିଛି। କିନ୍ତୁ ସେଦିନର ଛୋଟ ଛୋଟ କବିତା କୌଣସି ସଂକଳନ ରୂପ ଘେନିଥିବା ଜଣାଯାଏ ନାହିଁ। ଛୋଟଛୋଟ କବିତା ଥିବା ପୁସ୍ତକ ଭାବରେ 'ଛାୟାପଥର ଯାତ୍ରୀ'(୧୯୫୬) 'ଆନନ୍ଦ ସନ୍ଧାନ' (୧୯୮୧) ସଂପ୍ରତି ଉପଲବ୍ଧ ହୁଏ। 'ଚାରିଚକ୍ଷୁ' ବହିର ଭୂମିକା କବିଙ୍କ ଦ୍ୱାରା ଅହମ୍ମଦ ନଗର ଫୋର୍ଟରେ ୧୯୪୩ରେ ଲିଖିତ। ଷ୍ଟୁଡେ଼ଣ୍ଟସ୍ ଷ୍ଟୋର ତରଫରୁ ବହି ପ୍ରକାଶ ପାଇଛି କିନ୍ତୁ ୧୯୪୮ରେ। କବିଙ୍କ ରଚିତ ଭୂମିକା ଉଦ୍ଧାର କରିବା ପ୍ରାସଙ୍ଗିକ ବୋଧ ହେଉଛି ଏଇଥିପାଇଁ ଯେ; ତହିଁରେ କବିଙ୍କ ରଚନା ସମ୍ବନ୍ଧୀୟ ସ୍ୱୀକାରୋକ୍ତି ଉପଲବ୍ଧ ହୋଇଥାଏ। ଯେପରି; "ଧୂମ ଖରାବେଳେ ହଳ ଫିଟାଇ ମୂଲିଆ ଦୂରବିଲରୁ ଘରକୁ ଫେରୁଫେରୁ କ୍ଳାନ୍ତହୋଇ ବାଟରେ ବର ବା ଓସ୍ତଗଛର ଛାଇରେ ଥକା ମେଣ୍ଟାଇବା ପାଇଁ ଯେତେ୍‌ବେଳେ ବସିପଡ଼େ, ସେତେବେଳେ ସେ ଚାରିଆଡ଼କୁ ଅନାଇ କିଛି ସୁର୍ ଧରି ଗାଇବାକୁ ମନକହେ। ସଂଗୀତ ତାକୁ ଜଣାନାହିଁ, ମାତ୍ର ଶୁଣିଛି ସେ କେତେଥର ଅନେକ ସଂଗୀତ, ଯାହା ତାକୁ ସୁଖ ଲାଗିଛି। ସେଯାକୁ ମନେ ପକାଇ ରାଗଧରି କିଛି ଗାଇବାକୁ ମନକରେ। କାରଣ ଚାରିଆଡ଼େ ସୂର୍ଯ୍ୟର ପ୍ରଖର କିରଣ ଭିତରେ ସେ ଯେ ଟିକିଏ ଛାଇ ପାଇଛି, ସେହି ହେଉଛି ତା'ର ସଂଗୀତର ପ୍ରେରଣା, ଯାହା ଦିନରାତି ଜୀବିକାପାଇଁ ପରିଶ୍ରମରେ କୁଆଡ଼େ ଦବିଯାଇଥାଏ। ମୋର ସାହିତ୍ୟ ଚର୍ଚ୍ଚା ସେହିପରି। ରାଜନୀତିର କର୍ମମୟ ଜୀବନରେ ହନ୍ତସନ୍ତ ହୋଇ ଯେତେବେଳେ ଜେଲ୍ ଆସିବାକୁ ପଡ଼େ, ସେତେବେଳେ ଟିକିଏ ଛାଇରେ ବସି ପଡ଼ିଲାଭଳି ମନହୁଏ। ସେତିକିବେଳେ ଆପେ ଆପେ ସାହିତ୍ୟ ଆଡ଼କୁ ମନ ଯାଏ, ସେ ଦିଗରେ ସାଧନା ବା ଯୋଗ୍ୟତା ନଥିଲେ ମଧ୍ୟ, ନ ହେଲେ, ଖରାବେଳେ ବିଲ ମଝିରେ ମୂଲିଆ ଆଣ୍ଠେଇ ପଡ଼ି ଯେତେବେଳେ ଚାହିଁଦିଏ କେହି ଜାମାଯୋଡ଼ା ପିନ୍ଧି ଛତାଧରି ହିଡ଼ ଉପରେ ଯାଉଛି, ସେତେବେଳେ ତା'ମନରେ ଯେପରି ଆପେ ଆପେ ଟିକିଏ ଇର୍ଷାରଭାବ ଜାତହୁଏ, ସେହିପରି ରାଜନୀତିରେ ଥାଇ

ସାହିତ୍ୟିକମାନଙ୍କ ପ୍ରତି ମୋର ମଧ ହୋଇଥାଏ। ଭାବେଁ, ନଥାନ୍ତି କି ପଶି ଏହି ନିରସ କର୍ମମୟ ମରୁଭିତରେ। ମାତ୍ର ମନୁଷ୍ୟ ସବୁବେଳେ ତ ନିଜ ପରିସ୍ଥିତିର ପରିଚାଳକ ନୁହେଁ; ତେଣୁ ମନମାରି ରହିବାକୁ ହୁଏ, କେବେ ଜେଲ୍ ଆସିବାକୁ ଅପେକ୍ଷା କରି। ସେହି ସୁଯୋଗ ପୁରାଭାବରେ ଏବେ ମିଳିଛି, ତେଣୁ ମୋର ସାହିତ୍ୟ ଚର୍ଚ୍ଚା, ପଢିବା ଓ କିଛି ଲେଖି ମନର ସାଧ ବେଣ୍ଟାଇବା।" ନନ୍ଦିକା- ଚୋରଗଙ୍ଗ, ଲଳିତା-ଯଯାତି ଓ ସବାଖିଆ ଝିଅ ରାଜାରାଣୀ- ଭିକାରୀ ମଧ୍ୟରେ ଚାରିଚକ୍ଷୁ ହେବା, ସେମାନଙ୍କ ମାନସିକତା ମୁକ୍ତ ଛନ୍ଦରେ- ବେଳେବେଳେ ଉପାନ୍ତ ବର୍ଣ୍ଣ-ମେଳ ରୀତିରେ ପ୍ରକାଶିତ।'ପଲାସି ଅବସାନେ'(୧୯୪୯) କବିଙ୍କର ଏକ ଐତିହାସିକ କାବ୍ୟ। ସିରାଜୋଦ୍ଦଲାଙ୍କ ଉଜ୍ଜ୍ୱଳଦେଶ ପ୍ରେମ ଉପରେ କବି ଗୁରୁତ୍ୱ ଦେଇଥିବା ଏହି କାବ୍ୟରୁ ଜଣାଯାଏ। ପୁଣି ପଲାସି ଯୁଦ୍ଧପରେ ଲୋକମାନଙ୍କର କି ଅବସ୍ଥା ହେଇଥିଲା ତାହା ମଧ ଏହି କାବ୍ୟରେ ବର୍ଣ୍ଣନା କରାଯାଇଛି। 'ଆତ୍ମଦାନ' ଏକ ନାଟକ କାବ୍ୟ। ଚରିତ୍ରମାନଙ୍କ ମୁହଁରେ ନିଜ କଥା କହିବାର ଅଧିକ ସୁଯୋଗ ଥିବାରୁ କବି ମହତାବ ଏଭଳି ଶୈଳୀ ଅବଲମ୍ବନ କରିଛନ୍ତି। ନିଜଲୋକ ନିଜ ଦେଶ ଶାସନ କଲେ ଯେପରି ପରଦେଶାଗତ ଶାସନରେ ସେପରି କ'ଣ ଆଶା କରିହେବ। ଗ୍ରାମର ସାହୁପୁଅ ମୁହଁ କବି ଏହିଭଳି ପ୍ରକାଶ କରିଛନ୍ତି;

ନ ବୁଝି ନସୁଝିବାକୁ ଏଣୁତେଣୁ ଗୁଡ଼େ
ବୁଝିଛୁ ନା କିଛି କଥା ଗହିରକୁ ଯାଇ,
ସୁବର୍ଣ୍ଣ ନଗର ଆମ କେତେ ବଡ଼ ରାଜ୍ୟ
ଆମରାଜ୍ୟ ଆମ ରଜା ବୁଝନ୍ତେ ଯେପରି
ବୁଝିବେକି ସେହିପରି ପରଦେଶୀ ରାଜା
ରହିବ ତାଙ୍କର ମନ ତାଙ୍କ ରାଜ୍ୟ ଆଡ଼େ।(ପୃ-୬)

ଇଂରେଜମାନଙ୍କ ବଦଳରେ ଭାରତବର୍ଷ ଭାରତୀୟଙ୍କ ଦ୍ୱାରାଶାସିତ ହେବାପାଇଁ ଇଙ୍ଗିତ ଏହି କାବ୍ୟିକ ସଂଳାପରେ ପ୍ରକାଶିତ। ତେବେ ହରେକୃଷ୍ଣ ମହତାବଙ୍କ କବି-ଖ୍ୟାତି ପୁନଃ ମୂଲ୍ୟାୟନ ହୋଇପାରିଲେ ଓ ତାଙ୍କ କୃତି ଗୁଡ଼ିକ ସହଜଲଭ୍ୟ ହେଲେ ସେ ଯେ ଉତ୍କୃଷ୍ଟ କବି- ଏ କଥା ଏ ପିଢିର ପିଲାମାନଙ୍କ ପକ୍ଷେ ଜାଣିବା କଷ୍ଟକର ହେବନାହିଁ। ଅନ୍ୟଥା କବିଙ୍କ ରଚିତ 'କବି ଓ କବିତା'(ଛାୟାପଥର ଯାତ୍ରୀ-୧୯୫୬)

ପ୍ୟାରିସ୍ ବିମାନ ବନ୍ଦରରେ କେନ୍ଦ୍ର ଶିକ୍ଷମନ୍ତ୍ରୀ ଡକ୍ଟର ମହତାବ (୧୯୫୧)

କବିତାରେ କବିପ୍ରତି କବିତାର ଉକ୍ତିକୁ ସ୍ମରଣ କରି କବି-ପ୍ରତିଷ୍ଠାକୁ କବିତା ସ୍ୱୟଂ କାନ୍ଧ ଦେଇଛନ୍ତି ସବୁବେଳେ ଏକଥା କୁହାଯାଉଥିବ ଯେପରି;

ଯାଉଛି ମୁଁ କାଢିନେଇ ତୁମର ପ୍ରତିଷ୍ଠା
କବିବୋଲି ଅର୍ଜିଥିଲି  ଯାହା ଏତେଦିନ।(ପୃ-୨୦)

ଏ ମଧ୍ୟ କବି-ଚାତୁରୀ। କର୍ମବହୁଳ ଜୀବନରେ କବିତାପ୍ରତି ତାଙ୍କର ଅବହେଳା ନିଜ ସ୍ୱୀକାରୋକ୍ତି ଦେଇ କାବ୍ୟାୟିତ ହୋଇଛି। ଯାହା ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ, ଓଡ଼ିଆ କବିତା ଧାରାକୁ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ ।

କ/୪୯,ସେକ୍ଟର-୮,ସିଡ଼ିଏ,କଟକ-୧୪



# କଥା ରହିଯାଏ

## ପୀତାମ୍ବର ଜେନା

ଆପଣ ଏଠାରୁ ବିଦାୟ ନେବାରେ ୨୮ ବର୍ଷ ବିତିଗଲାଣି । ଦି' ଦିଇଟା ଜମୀଦାରୀର ମାଲିକ ହୋଇ ଧନ ସମ୍ପଦ ବା ମାନ , ଅପମାନ ସମ୍ମାନପ୍ରତି ଦୃଷ୍ଟି ନଦେଇ ମହାତ୍ମାଗାନ୍ଧୀଙ୍କର ଡ଼ାକରାରେ ଦେଶ ସେବା ପାଇଁ ପିଲା ବୟସରୁ ଡ଼େଇଁ ପଡ଼ିଲେ । ସତ୍ୟ ଅହିଂସା ମାର୍ଗରେ ଦୀକ୍ଷାଗ୍ରହଣ କଲେ ବହୁ ବର୍ଷ କାରାବରଣ କଲେ , ସାଂସାରିକ ଜୀବନ ପ୍ରତି ଦୃଷ୍ଟିଦେବାକୁ ସମୟ ପାଇଲେ ନାହିଁ । ଅବଶେଷରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ କେବଳ ମାତ୍ର ୨୭ ବର୍ଷର ଅହିଂସା ସଂଗ୍ରାମବଳରେ ଏତେବଡ଼ ସାମ୍ରାଜ୍ୟରୁ ପ୍ରବଳ ପରାକର୍ମୀ ଇଂରେଜ ରାଜତ୍ୱର ଅବସାନ ଘଟିପାରିଲା ।

ସମସ୍ୟା ଜର୍ଜରିତ ଭାରତ ବର୍ଷ ସାରା ଜାତିଆଣ ଯୁଦ୍ଧ ୧୯୪୨ ମସିହାରୁ ଲାଗିଯାଇଥିଲା । ମହମ୍ମଦ ଅଲ୍ଲୀଜିନ୍ନାଙ୍କ ଜିଦଖୋର ପ୍ରବୃତ୍ତି ଯୋଗୁ ଆମଦେଶ ଦି'ଭାଗ ହୋଇଗଲା । କାଶ୍ମୀରକୁ ଦି'ଭାଗ କରିଦିଆଗଲା ଓ ସେଠାରେ ଆମଦେଶ ପାଇଁ ଭବିଷ୍ୟତ ନିମନ୍ତେ ସ୍ଥାୟୀ ବିଷମଞ୍ଜି ବୁଣିଦିଆଗଲା । ସର୍ଦ୍ଦାର ପଟେଲଙ୍କର ଆଭିମୂଖ୍ୟକୁ ପ୍ରତ୍ୟାଖ୍ୟାନ କରାଗଲା । ଯେଉଁ ଦରିଦ୍ର ରାଷ୍ଟ୍ରର ଉନ୍ନତି ପାଇଁ ଲକ୍ଷ ୨କୋଟି ଟଙ୍କା ଖର୍ଚ୍ଚ ହୋଇପାରିଥାନ୍ତା । ତାହାର ସୁଅ ଏହି ଭୂମିଆଡ଼େ ମୁହାଁଇଲା ଓ ସ୍ଥାୟୀଭାବେ ପ୍ରତିବର୍ଷ ଆମର ସୈନ୍ୟବାହିନୀରୁ ଶହ ଶହ କର୍ମଠଯୁବକ ପ୍ରାଣଦେଇ ଚାଲିଛନ୍ତି ଓ ଚାଲିଥିବେ । ସ୍ୱାଧିନତା ପ୍ରାପ୍ତି ସଙ୍ଗେ ସଙ୍ଗେ ଭାରତବର୍ଷ ସାରା ବିଛିନ୍ନହୋଇ ରହିଥିବା ୫୬୬ଟି ଦେଶୀୟ ରାଜ୍ୟ ଓ ଗଡ଼ଜାତ ମଧ୍ୟ ସ୍ୱପ୍ନ ଦେଖିଚାଲିଲେ ନିଜନିଜର ଅଲଗା



କୃଷ୍ଚେଭଙ୍କ ସହ ଡକ୍ଟର ମହତାବ (୧୯୫୫)

ରାଜ୍ୟ ଗଠନ ନିମନ୍ତେ । ଓଡ଼ିଶାର ରାଜାଧିରାଜାଙ୍କର ପୌରହିତ୍ୟରେ Eastern states union ଗଠନର ଷଡ଼ଯନ୍ତ୍ର ଆରମ୍ଭ ହେଲା ମାତ୍ର ଆପଣଙ୍କର ତତ୍କାଳ ଉପସ୍ଥିତି ବୁଦ୍ଧିରେ ସର୍ଦ୍ଦାର ପଟେଲଙ୍କର ଆନ୍ତରିକ ସଦିଚ୍ଛା ଓ କୌଶଳ ରାଜନୀତି କ୍ରମେ ୨୪ଟି ଗଡ଼ଜାତ ମିଶ୍ରଣ ହୋଇପାରିଲା ଓ ବିହାରର ଷଡ଼ଯନ୍ତ୍ର ଯୋଗୁ ଆମର ଦୁଇଟି ପୋଖତ ଓଡ଼ିଆ ରାଜ୍ୟ ସରେଇକଲା ଓ ଖରସୁଆଁକୁ ସବୁଦିନ ପାଇଁ ହରାଇବସିଲୁ । ଏହାପରେ ଭାରତ ବର୍ଷ ସାରା ବିଭିନ୍ନ ରାଜ୍ୟରେ ଦେଶୀୟ ରାଜ୍ୟ ଓ ଗଡ଼ଜାମାନ କ୍ରମେ କ୍ରମେ ମିଶିଗଲା ! ଓଡ଼ିଶାରେ ହିରାକୁଦ ବନ୍ଧର ପରିକଳ୍ପନା ସ୍ୱାଧିନତା ପ୍ରାପ୍ତିର ୧୦ବର୍ଷପୂର୍ବରୁ କରାଯାଇଥିଲା ଏବଂ ପ୍ରଧାନମନ୍ତ୍ରୀ ନେହେରୁଙ୍କ ପୌରହିତ୍ୟରେ ୧୯୫୭ ମସିହାରେ କାର୍ଯ୍ୟକାରୀ ହୋଇଥିଲା । ଜନତାଙ୍କ ଅସହଯୋଗ ଓ ରାଜନୀତିର



ପଶାପାଲିରେ ମହାନଦୀର ଆଉ ୨ଟି ପ୍ରସ୍ତାବିତ ଅନ୍ତତଃ ଟିକରପଡ଼ା ବନ୍ଧ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଆଜି ଓଡ଼ିଶାର ଚାଷୀକୁଳ ଯେଉଁ ଅଭୂତପୂର୍ବ ଆତ୍ମହତ୍ୟାର ଯଜ୍ଞରେ ଆହୁତି ଦେଉଛନ୍ତି ତାହା ହୁଏତ ଆଜି ସମ୍ଭବପର ହୋଇପାରିନଥାନ୍ତା । ସେହିପରି ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠାର ତିବ୍ର ବିରୋଧ କରାଯାଇଥିଲା । ଆମେ ଆଜିଦେଖୁଛେ ଆମ ରାଜଧାନୀ ହାଓ୍ୱାର ବ୍ୟାପ୍ତି ଖୋର୍ଦ୍ଧା, ପିପିଲି ଓ କଟକ ଡେଇଁ ଜଗତପୁର ମଧ ଡ଼େଇଁ ସାରିଲାଣି । ଉତ୍କଳବିଶ୍ୱବିଦ୍ୟାଳୟ, କୃଷି ବିଶ୍ୱବିଦ୍ୟାଳୟ ସମେତ ଅନେକ ସଂସ୍ଥାର ପ୍ରତିଷ୍ଠା ଆପଣଙ୍କର ଦୂରଦୃଷ୍ଟି ଓ ଜିଦଖୋର ପ୍ରକୃତି ଯୋଗୁ ସମ୍ଭବପର ହୋଇପାରିଲା । ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା ପାଇଁ ବୋଇତ ବନ୍ଦାଣ ଉତ୍ସବ ୧୯୫୭ ମସିହାରୁ ହାଇଲେଭଲ କେନାଲ ଜରିଆରେ ଜେନାପୁର, କଟକ ଦେଇ ବିଭିନ୍ନ ଯାଗାରେ ଯେଉଁ ଉଦ୍ଦିପନାମୟ ସମ୍ବର୍ଦ୍ଧନା ସଭାମାନ ହଜାର ୨ ଲୋକଙ୍କ ଗହଣରେ କରାଯାଇଥିଲା। ତାହା ଆମେ ଦେଖିଆସୁଛୁ । ତଥାପି ପଶ୍ଚିମବଙ୍ଗଳାର ବିଷ ଦୃଷ୍ଟିରେ ଏହା ବନ୍ଦ ହୋଇ ଯିବାରୁ ପ୍ରଗାଢ ଉଦ୍ୟମ ହୋଇଥିଲା ମାତ୍ର ଫଳବତୀ ହୋଇପାରିଲା ନାହିଁ ।

ଆମ ରାଷ୍ଟ୍ର ତଥା ରାଜ୍ୟର ଉନ୍ନତି ପାଇଁ ଆପଣ ଯେଉଁ ସୁନେଲି ସ୍ୱପ୍ନ ଦେଖିଥିଲେ ପରଶ୍ରୀକାତର ରାଜନୀତିରେ ଏହା କୃଶବିଦ୍ଧ ହୋଇଗଲା। ଦେଶସାରା ଯେଉଁ ଦୁର୍ନୀତିର କଳାଛାୟା ରାକ୍ଷସ ପରି ମାଡ଼ିଚାଲିଲା । ସେଥିରେ ଆପଣଙ୍କ ଉଦ୍ୟମ ସମ୍ଭବପର ହୋଇପାରିଲା ନାହିଁ ନିଜର ଅନୁଭୂତି ସମ୍ପନ୍ନ ବହି 'while serving nation as a congressmen' ରାଷ୍ଟ୍ରପତି ମହୋଦୟ ଉଦ୍‌ଘାଟନ କରିବାକୁ ସମ୍ମତି ଦେଇ ପରେ ପଛଘୁଞ୍ଚା ଦେଇଥିଲେ । ଏ ନାଟକର କିଛିଦିନ ପରେ ଆପଣଙ୍କର ଜୀବନ ନାଟିକା ଅସ୍ତମିତ ହୋଇଗଲା । ମାତ୍ର ଦେଶବାସୀଙ୍କ ହୃଦୟରେ ଚିରସ୍ପନ୍ଦନ ସୃଷ୍ଟି କରି ଦେଇଯାଇଛନ୍ତି । ଆଜି ଏବେ ବି ।

**ବିହାରୀବାଗ କଲୋନି, କଟକ-୨**



# ବହୁ ନେତାମାନଙ୍କର ସ୍ରଷ୍ଟା

## କାଞ୍ଚନାରାୟଣ ମହାନ୍ତି

ଓଡ଼ିଶାର ଦୀପ୍ତୀମନ୍ତ ବ୍ୟକ୍ତିତ୍ୱ ଭାବେ ଡକ୍ଟର ହରେକୃଷ୍ଣ ମହତାବ ବିକାଶ, ଚିନ୍ତନ, ଦାନ ଜ୍ଞାନଠାରୁ, ସାମାଜିକ, ସାଂସ୍କୃତିକ, ଦାର୍ଶନିକ, ରାଜନୈତିକ, ସାମ୍ବାଦିକତା ଦିଗରେ ଜଣେ ସୁଦକ୍ଷ ପ୍ରତିଷ୍ଠାତା ଏବଂ ପୃଷ୍ଠପୋଷକ । ସେ ଓଡ଼ିଶାର ନବ ନିର୍ମାତା। ଜାତିପ୍ରୀତି ସ୍ୱାଭିମାନର ପ୍ରତୀକ, ଭାଷା ପ୍ରୀତି ଯେ କୌଣସି ସଂସ୍କୃତିର ଜାଗରଣର ଆଦି ତତ୍ତ୍ୱ । ନିଜ ଭାଷା, ସାହିତ୍ୟ, ଐତିହ୍ୟ ଓ ସଂସ୍କୃତିପ୍ରୀତି ଅନୁରାଗ ଗୋଟିଏ ସୁସ୍ଥ, ଅଗ୍ରଗାମୀ ଜାତିର ପରିଚୟ ।

ଜାତିର ଇତିହାସ ନଥିଲେ ତାହାର ଅସ୍ତିତ୍ୱ ସନ୍ଦିହାନ, ମୁଣ୍ଡବିହୀନ · କ୍ଲିଷ୍ଟ ଭଳି ଗୋଟିଏ ଜାତିର ଗରିମା ତାର ଉତ୍‌ଥାନ ପତନର ସାକ୍ଷୀ ହେଲା ତାର ଇତିହାସ । ଡଃ ମହତାବ ଇତିହାସ ଗବେଷଣାରୁ ଦେଖିଛନ୍ତି । ଭାଷା ଓ ଧର୍ମବିଶ୍ୱାସକୁ ଭିତ୍ତି କରି ସମାଜ ଗଠିତ ହୁଏ ଏବଂ ଏହି ସଂଗଠନ ଭୌଗୋଳିକ ଶାସନଗତ ଅନ୍ୟ କୌଣସି ପ୍ରତିବନ୍ଧକ ସ୍ୱୀକାର କରେ ନାହିଁ । ପୃଥିବୀର ଇତିହାସରେ ବହୁ ସମାଜ ଓ ସଭ୍ୟତା ଲୋପପାଇଯାଇଛି । ଆମ ଭାରତରେ ମଧ୍ୟ ସ୍ୱତନ୍ତ୍ର ସମାଜ ଲୋପ ପାଇଯାଇ ଅନ୍ୟ ସମାଜମାନଙ୍କ ସହିତ ମିଶିଯାଇ ନୂତନ ସମାଜ ଗଠନ କରିଛନ୍ତି । ଓଡ଼ିଆ ସମାଜ ବହୁ ବାଧାବିଘ୍ନର ସମ୍ମୁଖିନ ହୋଇ ମଧ୍ୟ ନିଜର ସ୍ୱତନ୍ତ୍ର ରକ୍ଷା କରିଆସିଛି । ଏହାର କାରଣ ହେଉଛି ଆମର ସମୃଦ୍ଧ ଭାଷା ସାହିତ୍ୟ । ଆଉ ଆମ ପ୍ରଭୁ ଜଗନ୍ନାଥ ଯେ କି ଓଡ଼ିଆ ଧର୍ମବିଶ୍ୱାସର କେନ୍ଦ୍ର ।

ଓଡ଼ିଶାର ଗର୍ବ ଗୌରବ ରକ୍ଷା କରିବାରେ ଯେଉଁ ମହାରଥି ସତତ ସତର୍କ ଥିଲେ ସେ ହେଲେ ଡଃ ହରେକୃଷ୍ଣ ମହତାବ । ପ୍ରଚଣ୍ଡ ଧୀଶକ୍ତିଧାରୀ ଡଃ ମହତାବ ମାତ୍ର ୨୧ ବର୍ଷ ବୟସରେ ସାମାଜିକ ଚେତନାର ଉନ୍ମେଷ ନଘଟିଲେ ରାଜନୈତିକ ସଚେତନତା ଜାଗ୍ରତ ହୋଇପାରିବ ନାହିଁ ଏହି ସଚେତନତାର ଅଭାବ ଏତେ ଶକ୍ତିଶାଳି ଯାହା ପ୍ରବଳ ପ୍ରବଳ ପରାକ୍ରମୀ ଇଂରେଜ ସରକାର ବିରୁଦ୍ଧରେ ଗଣ ଆନ୍ଦୋଳନ ସମ୍ଭବ ହୋଇପାରିଥିଲା । ଯାହାର ଅଗ୍ରଭାଗରେ ଥିଲେ ୨୧ବର୍ଷ ବୟସ୍କ ଡକ୍ଟର ମହତାବ । ପଣ୍ଡିତ ନେହେରୁଙ୍କ ସହ ଏକମାତ୍ର ଥିଲେ ଡଃ ମହତାବ । ସେ ଅନୁଭବ କରିଥିଲେ ଯେ ଭାରତର ଭବିଷ୍ୟତ ଜାତୀୟ ଏକତା ଓ ସଂହତି ଉପରେ ପର୍ଯ୍ୟବସିତ । ସେଥିପାଇଁ ସଂକୀର୍ଣ୍ଣ ସ୍ୱାର୍ଥ ଜନିତ କନ୍ଦଳକୁ ଭୁଲି , ଦେଶ ପାଇଁ କର୍ତ୍ତବ୍ୟ ପ୍ରତି ପ୍ରାଧାନ୍ୟ ଦେବା ପ୍ରତ୍ୟେକଙ୍କର ସଂକଳ୍ପ ରହିବା ଉଚିତ । ସ୍ୱାଧିନତା ଆନ୍ଦୋଳନର ସ୍ୱର ତ୍ରୀବ୍ର ହୋଇଉଠୁଥିଲା । କେବଳ ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ସଂସ୍ଥାମୂଳକ ପଦକ୍ଷେପ ଦ୍ୱାରା ଜନଜୀବନକୁ ବିକଶିତ ଓ ସଂଗଠିତ କରିବା ସହଜ ହୋଇପାରିଥିଲା ।

କଠୋର ଜାତିପ୍ରଥା, ଅସ୍ପୃର୍ଯ୍ୟତାର କଳଙ୍କ ଅନ୍ଧବିଶ୍ୱାସ ଆମ ସମାଜକୁ ବିକଶିତ କରିବାରେ ବାଧକ କଲା । ଏହି କୁସଂସ୍କାରକୁ ଭାଷଣ ଦ୍ୱାରା ଦୂର କରିବା ଭୟ ଦେଖାଇ ହରଣ କରିବା ସମ୍ଭବ ନୁହେଁ । ସ୍ୱାଭାବିକ ପ୍ରକ୍ରିୟାରେ ଏହାକୁ ସାଧନ କରିବାକୁ ସେ ଉଦ୍ୟମ କରୁଥିଲେ । ତାଙ୍କ ପାରିବାରିକ ମନ୍ଦିରକୁ ସେ 'ବିଦ୍ୟାଳୟ' ଭାବେ ନାମଦେଇ ସେଠାରେ ଶିକ୍ଷା ବ୍ୟବସ୍ଥା କରିଥିଲେ । ଗାନ୍ଧିଜୀଙ୍କ ପରିବର୍ତ୍ତିତ ଗଠନମୂଳକ କାମ ପାଇଁ ସେ ଏକ ମନ୍ଦିରକୁ 'କର୍ମମନ୍ଦିର' ନାଁ ଦେଇ ସେଠାରେ ସର୍ବସାଧାରଣକୁ ଧନ୍ଦାମୂଳକ ଶିକ୍ଷାର ନେଇ ଆତ୍ମନିର୍ଭରଶୀଳ ହୋଇ ପାରିଥିଲେ । ଏଠାରେ ଉତ୍ସବ ଓ ପର୍ବପର୍ବାଣିରେ ହେଉଥିବା ଖର୍ଚ୍ଚକୁ ଆତ୍ମନିଯୁକ୍ତି ପାଇଁ ଓଡ଼ିଶାରେ ସର୍ବ ପ୍ରଥମ ମନ୍ଦିର । ବଙ୍ଗଳାର ଇଶ୍ୱରଚନ୍ଦ୍ର ବିଦ୍ୟାସାଗର ପରି ସେ ଓଡ଼ିଶାର ଲେଖାର ପ୍ରସାର ପାଇଁ ବିହିତ ପଦକ୍ଷେପ ନେବା ପାଇଁ ଖର୍ଚ୍ଚ କରାଗଲା । ତାଙ୍କ ମନ୍ଦିର ହରିଜନମାନଙ୍କ ପାଇଁ ଉନ୍ମେଷ । ଶେଷ ଜୀବନ ପର୍ଯ୍ୟନ୍ତ ନିଜକୁ ସମର୍ପିତ କରିଥିଲେ । ବିଭିନ୍ନ ରାଜନୈତିକ , ସାମାଜିକ, ଅନୁଷ୍ଠାନରେ ଶିକ୍ଷାର ମହତ୍ୱ ବିଷୟରେ ସେ



ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ, ବର୍ମାର ପ୍ରଧାନମନ୍ତ୍ରୀ ୟୁ ନୁ ଙ୍କ ସହ ରାଜ୍ୟପାଳ ସୁଖ ଠନକର ଓ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ (୧୯୬୦)

ମତ ବ୍ୟକ୍ତ କରୁଥିଲେ । ଶିକ୍ଷା ବିନା ବେକାରୀ ସମସ୍ୟା ସଂପୂର୍ଣ୍ଣ ଦୂର ହୋଇ ନପାରେ କିନ୍ତୁ ମୌଳିକ ସୁଖ ସୁବିଧା ଓ ମତ ଅଭିଯୋଗ ଉପସ୍ଥାପନ ପାଇଁ ତ ସମ୍ଭବ ହୋଇପାରେ। ତାଙ୍କ ମୁଖମନ୍ତ୍ରୀତ୍ୱ ସମୟରେ ସେ ପ୍ରତ୍ୟେକ ଜିଲ୍ଲାର ସଦର ମହକୁମାରେ ମହାବିଦ୍ୟାଳୟ ମାନ ଖୋଲିପାରିଥିଲେ । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର ଅନେକ ବିକାଶମୂଳକ କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ବମ୍ବେର ରାଜ୍ୟପାଳ ଥିବା ସମୟରେ ପୁନେୟୁନିଭରସିଟିର ସମାବର୍ତ୍ତନ ଉତ୍ସବରେ ଯୋଗଦେଇ ସେ ଶିକ୍ଷା ବିକାଶ ଓ ଯୁବଶକ୍ତିର ଉପଯୋଗ ଉପରେ ଗୁରୁତ୍ୱାରୋପ କରିଥିଲେ ।

ସମାଜର ଶ୍ରୀବୃଦ୍ଧିରେ ନିଶା ଏକ ଅସମୟରେ କୃତ୍ୟୁର କରାଳ ରାକ୍ଷସ । ଏହୀ ପରିବାରର ସୁଖ ଶିରି ନଷ୍ଟ କରି ଜୀବନକୁ ଜାଳିଦିଏ । ଗୋଟିଏ ଲୋକ

ଅବାଟକୁ ଯାଏ ତାର ପାଇଁ ପରିବାର ଓ ପଡ଼ୋଶୀମାନେ ନିନ୍ଦିତ ଆନ୍ଦୋଳିତ ହୋଇଥାନ୍ତି ।

ସମସ୍ତ ସରକାରୀ ଉତ୍ସବରେ ମଦ ପରିଷେଣକୁ ସେ ବିରୋଧ କରିଥିଲେ । ଏଥିସହିତ ସମସ୍ତ ଅତିଥିଶାଳା , ସରକାରଙ୍କ ଦ୍ୱାରା ପରିଚାଳିତ ହୋଟେଲ ଗୁଡ଼ିକର ଏପରିକି ଆମ୍ବାସିମାନଙ୍କର ମଦ ପ୍ରଚଳନକ ନକରିବା ପାଇଁ ଦୃଢ ମତପୋଷଣ କରିଥିଲେ ।

ରାଜାମୋହନଙ୍କ ସତୀଦାହ ପ୍ରଥା ତଥା ମହିଳାମାନଙ୍କର ସ୍ୱାଦ୍ନତା ପ୍ରତି ଧ୍ୟାନ ଦେବା ପାଇଁ ସେ ଜନଜାଗରଣ ସୃଷ୍ଟି କରିଥିଲେ । ରକ୍ଷଣଶୀଳ ଜମିଦାର ଘରର ବୋହୁ ହୋଇଥିଲେ ମଧ ସ୍ୱାମୀଙ୍କର ଆଦର୍ଶକୁ ସମ୍ମାନ ଦେଇ ସୁଭଦ୍ରା ମହତାବ ସ୍ୱାଧିନତା ସଂଗ୍ରାମରେ ଯୋଗଦେଇଥିଲେ। ସଂଗ୍ରାମରେ ଯୋଗଦେଇଥିଲେ । ସୁଭଦ୍ରା ମହତାବଙ୍କ ପରି ଉଚ୍ଚକୂଳର ବୋହୂଙ୍କର ଦେଶପ୍ରୀତିରେ ଅନୁପ୍ରାଣିତ ହେବା ଦ୍ୱାରା ବହୁ ସଂଖ୍ୟାରେ ବିଭିନ୍ନ ସଂପ୍ରଦାୟ ଓ ଜାତିର ମହିଳାମାନେ ମୁକ୍ତି ସଂଗ୍ରାମରେ ଯୋଗଦେଲେ । ଏ ଜାତୀୟ ଆନ୍ଦୋଳନରେ ନାରୀ ସଂଗଠନ ହରିଜନ ସେବା , ନିଶାନିବାରଣ , ବିଦେଶୀବସ୍ତ୍ର ବର୍ଜନ, ବାଲ୍ୟବିବାହ ପ୍ରଥା ଅନୁଚିତ, ଅନ୍ୟାନ୍ୟ ସାମାଜିକ କୁସଂସ୍କାର ପ୍ରତି ବଳିଷ୍ଠ ପଦକ୍ଷେପ ନେଲେ ।

କୃଷକମାନଙ୍କ ପାଇଁ ହୀରାକୁଦ ନଦୀବନ୍ଧ ଯୋଜନା ଡଃ ମହତାବଙ୍କର ସବୁଠାରୁ ମହତ ପଦକ୍ଷେପ ଏହି ବନ୍ଧ ଯୋଗୁ ଅନେକ ଅଞ୍ଚଳର ଚାଷୀମାନଙ୍କର ଜମି ଜଳସେଚିତ ହୋଇ ସେମାନେ ଦୁଇ ଦୁଇଟି ଫସଲ ଧାନ ଓ ରବି ଫସଲ କରିବା ସମ୍ଭବ ହେଲା । ଯଦି ଜମିର କୃଷି ଉତ୍ପାଦିକା ଶକ୍ତି ଅଧିକ ହେବ, ତେବେ ପର୍ଯ୍ୟାପ୍ତ ଫସଲ ଅମଳ ସମ୍ଭବ ହେବ, ତଦ୍ୱାରା ଚାଷି ଉପକୃତ ହେବା ସହିତ ଅଧିକ ବଳକା ଫସଲକୁ ବିଦେଶକୁ ରପ୍ତାନୀ କରିବା ସୁଯୋଗ ପାଇବ ତେଣୁ ଚାକିରି ପାଇଁ ଅନ୍ୟତ୍ର ନ ଦୌଡ଼ି ନିଜ ଜମିରେ ଫସଲ କରି କୃଷକ ସ୍ୱାବଲମ୍ବୀ ହେବା ସହିତ ଅନ୍ୟମାନଙ୍କୁ ଚାଷରେ ନିଯୁକ୍ତ କରି କର୍ମ ନିୟୋଜନ ସୁଯୋଗ ସୃଷ୍ଟି କରିପାରିବେ ।

ସେହି ସୁଯୋଗ ସୃଷ୍ଟି ପାଇଁ ସେ ଓଡ଼ିଶାର କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର

ସ୍ୱପ୍ନ ଦେଖିଥିଲେ । ଫସଲ ଅମଳ ହେଲେ ଏଥିପାଇଁ ବଜାର ସୃଷ୍ଟିକରିବା ଜରୁରୀ । ଚାଷର ଉତ୍ପାଦକୁ କିଣିବା ପାଇଁ ମଧ୍ୟ କ୍ରେତାର ଆବଶ୍ୟକ ରହିଛି ।

ଓଡ଼ିଶାରୁ ଚାଷିମାନଙ୍କର ସମସ୍ୟା ଏ ପର୍ଯ୍ୟନ୍ତ ଯାଇନାହିଁ । କେବଳ ଧାନ ଫସଲ ଛଡ଼ା ପନିପରିବା, ଫଳମୂଳ, ମାଛ ଅଣ୍ଡା ପର୍ଯ୍ୟନ୍ତ ସବୁ ପ୍ରକାର ମସଲା ଏପରିକି ଫୁଲ ପାଇଁ ମଧ୍ୟ ଅନ୍ୟ ରାଜ୍ୟକୁ ନିର୍ଭର କରି ବସୁଛୁ । ଏଥିପାଇଁ ବୈଜ୍ଞାନିକ ଜ୍ଞାନକୌଶଳର ତାଲିମ ଓ ଚାଷୀର ପ୍ରୟୋଗ ଶିକ୍ଷା ଦେବା ଜରୁରୀ । କେବଳ ବ୍ୟାଙ୍କରୁ ଋଣ ସହାୟତା ମିଳିଲେ କୃଷକମାନଙ୍କ ପାଇଁ ଆମର କର୍ତ୍ତବ୍ୟ ସରିଯାଏ ନାହିଁ । ଫସଲ ଆମଦାନୀ, ଖରିଦବିକ୍ରୀ ପରେ ଚାଷିର ସମ୍ବଳ କେତେ ରହିଲା ତାହା ମଧ୍ୟ ସମୀକ୍ଷା କରିବାର ଆବଶ୍ୟକତା ରହିଛି । ଚାଷୀମାନଙ୍କୁ ରିହାତି ବ୍ୟବସ୍ଥା ତଥା କର ଲାଗୁ ନହେବା ପାଇଁ ଡଃ ମହତାବ ଦୃଷ୍ଟି ରଖିଥିଲେ । ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ସେହି ସମୟରେ ଭୁବନେଶ୍ୱରରେ ଓଡ଼ିଶାର ନୂଆ ରାଜଧାନୀ ପ୍ରତିଷ୍ଠା କରିବାପାଇଁ ବିଚକ୍ଷଣ ନେତା ପାରଦର୍ଶୀତାର ସାକ୍ଷୀ ସ୍ୱରୂପ ଓଡ଼ିଶା ବିଧାନସଭାରେ ପ୍ରସ୍ତାବ ମଞ୍ଜୁର କରେଇ ନେଇ ଥିଲେ । ତାଙ୍କ ଯୋଗୁ ଭୁବନେଶ୍ୱର ସହରର ପରିକଳ୍ପନା ଓ ରାଜଧାନୀ ପ୍ରତିଷ୍ଠା ସମ୍ଭବ ହୋଇଛି । ଅନୁରୂପ ଭାବେ କଟକର ଶିଶୁଭବନର ପ୍ରତିଷ୍ଠା ପର୍ବ ଆରମ୍ଭ ହୁଏ ସେତେବେଳେ ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ସହ ମିଶି ଦେଶୀୟ ରାଜ୍ୟଗୁଡ଼ିକୁ ଭାରତ ସହ ମିଶ୍ରଣ କରାଇବା ଅଭିଯାନ । ଆଗେ ଓଡ଼ିଶାରୁ ଏହି ଅଭିଯାନ ଆରମ୍ଭ ହୋଇ ଦେଶୀୟ ରାଜ୍ୟଗୁଡ଼ିକୁ ଏକତ୍ର କରି ତେରଟି ଜିଲ୍ଲାରେ ପରିଣତ କଲେ । କଟକର ହାଇକୋର୍ଟକୁ ଲାଗି ରହିଥିଲା ଇଂରେଜ ଶାସନ ଅମଳର 'ଗର୍ଭର୍ଣ୍ଣର ହାଉସ'କୁ ବହୁ ପୁରାତନ ଐତିହାସିକ ସ୍ମୃତି ସୌଧ । ୧୯୪୮ ମସିହାରେ ସର୍ଦ୍ଦାର ପଟେଲ ଆସିଥିଲେ । କଟକ ଗଡ଼ଜାତ ମିଶ୍ରଣର ଖସଡ଼ା ପ୍ରସ୍ତୁତ ସମୟର ରହଣିକାଳରେ ଡଃ ମହତାବ ତାଙ୍କର ରହଣି ସ୍ଥଳକୁ ଚିର ସ୍ମରଣୀୟ କରିବା ପାଇଁ ସେଇ 'ଗର୍ଭର୍ଣ୍ଣର ହାଉସ କୁ' ସର୍ଦ୍ଦାର ବଲ୍ଲଭଭାଇ ପଟେଲ ସ୍ନାତକୋତର ଶିଶୁ ଚିକିତ୍ସା ପ୍ରତିଷ୍ଠାନ ଭାବରେ ନାମିତ କରିଥିଲେ ।

ସେ 'ଗାଁ ମଜଲିସ' ଲେଖାରେ ବଳିପ୍ରଥା ବନ୍ଦ କରିବା ପାଇଁ ଜନକଲ୍ୟାଣ ,

ପଶୁକଲ୍ୟାଣ ଉଦ୍ଦେଶ୍ୟରେ ଅନେକ ଲେଖା ଲେଖି ବିବେକୀ ମଣିଷମାନଙ୍କ ପାଇଁ ଅମୃତସନ୍ଦେଶ ପଠାଇଥିଲେ । କେତେକ କ୍ଷେତ୍ରରେ ଏହା କାର୍ଯ୍ୟକାରୀ ହୋଇଥିଲେ ସୁଦ୍ଧା ସଂପୂର୍ଣ୍ଣ ବଳି ନିଷେଧ ଏଯାଏଁ ସମ୍ଭବ ହୋଇପାରିନାହିଁ । ମହତାବଙ୍କର 'ଗାଁ ମଜଲିସ କୁ ' ପଢିବା ପାଇଁ ପାଠକମାନେ ଚାତକ ଭଳି ଚାହିଁ ରହୁଥିଲେ । ସେଥିରେ ସେ କ'ଣ ଯେ ଉପସ୍ଥାପନା କରୁନଥିଲେ ଏଥିରେ ଚୁଲିଠାରୁ ଦିଲ୍ଲୀପର୍ଯ୍ୟନ୍ତ ଶିକ୍ଷା, ସାହିତ୍ୟ, ରାଜନୀତି, ଶିଳ୍ପ, ବାଣିଜ୍ୟ, କୃଷି , ଅର୍ଥନୀତି, ସାମାଜିକ ଜଡ଼ତା, କୁସଂସ୍କାର ସବୁକିଛି ରହିଥିଲେ ।

ଶିଶୁକିଶୋର ପତ୍ରିକା ମାସିକ ସଚିତ୍ର 'ମୀନାବଜାର' ଠାରୁ 'ପ୍ରଜାତନ୍ତ୍ର' , 'ପ୍ରତିଭା', 'ଝଙ୍କାର', 'ଇଷ୍ଟର୍ଣ୍ଣ ଟାଇମସ' ପର୍ଯ୍ୟନ୍ତ ସବୁକରି ଓଡ଼ିଶା ବିକାଶ ପାଇଁ ଉଦ୍ଦିଷ୍ଟ ଥିଲା । ପଶ୍ଚିମାଞ୍ଚଳ ପାଇଁ 'ହୀରାଖଣ୍ଡ' ଦୈନିକ ପ୍ରକାଶ କରୁଥିଲେ ।

'ବିଷୁବମିଳନ' ତାଙ୍କର ଏପରି ଏକ ସମାହାର ଯେଉଁଠି ସାରା ଓଡ଼ିଶାର କୁନି ଲେଖକ, ସମାଲୋଚ. ଚିତ୍ରକର, କଳାକା, କ୍ରୀଡ଼ାବିତ ମାନଙ୍କର ମିଳନ ଆଦାନପ୍ରଦାନ ସମ୍ଭବ ହୁଏ ଭାରତବର୍ଷରୁ ବିଶିଷ୍ଟ ସାହିତ୍ୟକ ସମାଲୋଚକମାନଙ୍କ ବକ୍ତା ଭାବରେ ଆମନ୍ତ୍ରିତ କରାଯାଇଥାଏ । ଶ୍ରେଷ୍ଠ ଲେଖକ ଲେଖିକା ମାନଙ୍କୁ ସଂବର୍ଦ୍ଧନା ଦିଆଯାଇଥାଏ ।

ମନଛୁଆଁ କବିତା କାହାଣୀ, ଚିତ୍ରକଥା, ଜୀବନୀ ନୀତିକଥା, ମଜାକଥା ଅତି ମନୋରମ ପୁରପଲ୍ଲୀର ଶିଶୁମାନଙ୍କ ମଧ୍ୟରେ ସାଂସ୍କୃତିକ ଚେତନା, ସୃଜନଶୀଳତା ସୃଷ୍ଟିକରିବା ଏହାର ଉଦ୍ଦେଶ୍ୟଥିଲା ରାଜନୀତି ସାମାଜିକ ସ୍ଥିତି ପରଂପରା ବିଷୟରେ ଅଣଓଡ଼ିଆ ତଥା ବିଦେଶୀ ମାନେ ମଧ୍ୟ ଜାଣିବେ ।

ହରେକୃଷ୍ଣ ମହତାବ ଓଡ଼ିଶାର ଗବେଷଣାର ଅଭାବ ଅନୁଭବ କରି ୧୯୫୦ ମସିହାରେ 'ରିସର୍ଚ୍ଚ ସେକସନ' ଖୋଲି ଶିଶୁପାଳଗଡ଼ର ପ୍ରତ୍ନତାତ୍ତ୍ୱିକ କାର୍ଯ୍ୟରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କେଦାରନାଥ ମହାପାତ୍ର, ପରମନନ୍ଦ ଆଚାର୍ଯ୍ୟ, ସତ୍ୟନାରାୟଣ ରାଜଗୁରୁ, ସୁଶୀଳଚନ୍ଦ୍ର ଦେ ଏହି ଗବେଷଣାର ଦାୟିତ୍ୱ ଦେଇଥିଲେ ।

୧୯୫୭ ମସିହାରେ 'ଓଡ଼ିଶା ହିଷ୍ଟୋରିକାଲ ଜର୍ଣ୍ଣାଲ' ତାଙ୍କ ପୃଷ୍ଟପୋଷକତାରେ ଆରମ୍ଭ ହେଲା । ଅନେକ ବରିଷ୍ଠ ଗବେଷକ ଏଥିରେ ଯୋଗଦେଲେ । ଅନ୍ୟାନ୍ୟ

ଶାସନତାନ୍ତ୍ରିକ, ରାଜନୈତିକ, ଦାୟିତ୍ୱ ସହିତ ସେ ଏହି ରିସର୍ଚ୍ଚ ଜର୍ଣ୍ଣାଲ ଉପଦେଷ୍ଟା କମିଟିର ପ୍ରଥମେ ସଭାପତି ତାପରେ ସେହି ଜର୍ଣ୍ଣାଲର ମୁଖ୍ୟ ସଂପାଦକ କାର୍ଯ୍ୟ ନିର୍ବାହ କରିବା ଥିଲା ।ପଣ୍ଡିତ ନେହେରୁ ଏଡ଼ୱାର୍ଡ଼ ଥମସନଙ୍କ ଲିଖିତ The beginning of the Indianprinus ନାମକ ଇତିହାସ ଏହି ମହତାବଙ୍କୁ ଦେଖାଇଲେ । ଏଥିରେ ସେ ଜଗନ୍ନାଥ ଓ ଶ୍ରୀକ୍ଷେତ୍ର ବିଷୟରେ ବିକୃତ ମନ୍ତବ୍ୟ ରଖିଥିବାରୁ ସେ ମର୍ମାହତ ହେଲେ । ଖାଲି ତାଙ୍କ ଚିନ୍ତାଧାରା ଅମୂଳକ ବୋଲି କହିଦେଲେ ଏତେ ବଡ଼ ଭୁଲର ସମାଧାନ ସମ୍ଭବ ନୁହେଁ ସେଥିପାଇଁ ତଥ୍ୟ ସଂପ୍ରମାଣ ଉପସ୍ଥାପନ ଦରକାର, ଯାହାକି ଥମସନଙ୍କ କଥାରୁ ଭୁଲ ପ୍ରମାଣିତ କରିବ ସେଇ ଜିଦରେ ମହତାବ ଲେଖିଲେ 'ହିଷ୍ଟ୍ରୀ ଅଫ ଓଡ଼ିଶା' । ଏହା ପୂର୍ବରୁ ଓଡ଼ିଶାର ଇତିହାସ ବୋଲି କିଛି ପ୍ରାମାଣିକ ଗ୍ରନ୍ଥ ବୋଲି କିଛି ନଥିଲା ।

ଐତିହାସିକ ଭାବରେ ସେ ପିତାମହଭୀଷ୍ମ ଅଦ୍ଭୁତ ତାଙ୍କର ସ୍ମରଣ ଶକ୍ତି ସେ ଥିଲେ ଅନେକରେ ପ୍ରଥମରେ ପ୍ରଥମ, ପ୍ରଥମ କେନ୍ଦ୍ରମନ୍ତ୍ରୀ, ପ୍ରଥମ ଓଡ଼ିଆ ରାଜ୍ୟପା, ପ୍ରଥମ ସ୍ୱାଧିନଭାରତର ପ୍ରଥମ ମୁଖ୍ୟମନ୍ତ୍ରୀ, କଂଗ୍ରେସ କାର୍ଯ୍ୟକାରିଣୀ ସମିତିର ଓଡ଼ିଶାରୁ ପ୍ରଥମ ସଭ୍ୟ । ସେହି ଅମୂଲ୍ୟ ଗ୍ରନ୍ଥ ବିଶ୍ୱ ପାଇଁ ଓଡ଼ିଶାର ଗୌରବ ରକ୍ଷାକରିପାରିଛି । ଓଡ଼ିଶାର ଦେବତାଙ୍କୁ ବିକୃତ କରିଥିବା ଥମସନଙ୍କ ପାଇଁ ସେ କେବଳ ଓଡ଼ିଶା ଇତିହାସ ଲେଖିଲେ ନାହିଁ ଓଡ଼ିଶାର ଅବଦାନଗୁଡ଼ିକ ମଧ୍ୟରେ ଓଡ଼ିଶାର ହାଇକୋର୍ଟ ପ୍ରତିଷ୍ଠା, ଆକାଶବାଣୀ ପ୍ରତିଷ୍ଠା, ଦେଶୀୟ ରାଜ୍ୟ ମିଶ୍ରଣ, ଓଡ଼ିଶା ଲୋକସେବା ଆୟୁକ୍ତ, ହୀରାକୁଦ ବନ୍ଧ ଯୋଜନା, ନୂତନ ରାଜଧାନୀ ପ୍ରତିଷ୍ଠା ପାଇଁ ମଞ୍ଜୁର ଓ ବିକାଶ। ଓଡ଼ିଶା ଇତିହାସ ରଚନା, ଆନ୍ଧ୍ରବିଶ୍ୱବିଦ୍ୟାଳୟ ରୁ ପିଏଚଡ଼ି, ପ୍ରଦାନ , ସାହିତ୍ୟ ଓ ରାଜନୀତି ପ୍ରତି ଥବା ଅବଦାନ ଯୋଗୁ ସାଗର ବିଦ୍ୟାଳୟ ତରଫରୁ ସମ୍ମାନସୂଚକ ଡକ୍ଟରେଟ ଡ଼ିଗ୍ରୀ ଲାଭ , 'ଗାଁ ମଜଲିସ' ବହିପାଇଁ କେନ୍ଦ୍ର ସାହିତ୍ୟଏକାଡ଼େମୀ ପୁରସ୍କାର, ତିରିଶଖଣ୍ଡ ପୁସ୍ତକ ରଚୟୀତା ଡଃ ମହତାବ କ୍ଷମତାରେ ଥିବା ନଥିବା ଏକଥା । ସେ ଯେତେବେଳେ ଯେଉଁ ସରକାରୀ ବା ବେସରକାରୀ ବ୍ୟକ୍ତିବିଶେଷଙ୍କ ନିକଟକୁ ଫୋନ ବା ବାର୍ତ୍ତାପଠାଇଲେ ଅବିଚାରରେ ସେ କାମ ହୋଇଯାଉଥିଲା ।

କ୍ଷମତାରେ ଥିଲାବେଳେ ତାଙ୍କର ପରାମର୍ଶ ପାଇଁ ଯେତିକି ଲୋକ ତାଙ୍କ

ପାଖକୁ ଯାଉଥିଲେ । ତାଙ୍କର ଭୁବନେଶ୍ୱରର ଏକାମ୍ର ନିବାସରେ ଗାଁର ମଳିମୁଣ୍ଡିଆଠରୁ ନେତା ଧୋବଧଉଳିଆମାନଙ୍କ ପାଇଁ ସବୁବେଳେ ଖୋଲାଥିଲା । ସମସ୍ତଙ୍କ କଥା ସେ ଶୁଣୁଥିଲେ । କଟକ ବିହାରିବାଗର 'ପ୍ରଜାତନ୍ତ୍ର' ପରିସର ଏକ ମଣିଷଗଢିବାର ପୀଠଥିଲା । ଅନେକ ସଂଖ୍ୟାରେ ଶିକ୍ଷିତ ଯୁବକ ଏହିଠାରେ କ୍ୟାମ ଆରମ୍ଭ କରି ଓଡ଼ିଶା ତଥା ଭାରତ ରାଜନୀତିରେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ନିର୍ବାହ କରିଛନ୍ତି । ଡଃ ମହତାବ ଅପ୍ରତିଦ୍ୱନ୍ଦୀ ବ୍ୟକ୍ତିତ୍ୱ । ଗୁରୁଦ୍ରୋଣଙ୍କ ପରି ତାଙ୍କ ଶିଷ୍ୟ ଯେଉଁ ପକ୍ଷ ନେଇ ଲଢେଇ କରୁଥିଲେ ବି ଜିତିବାର କୌଶଳରେ ସେ ଧୂରୀଣ ।

ଓଡ଼ିଶାର ଯେ କୌଣସି ଦଳର ନେତୃତ୍ୱ ଆବଶ୍ୟକ ବେଳେ ତାଙ୍କର ସୁଚିନ୍ତିତ ଦିଗ୍‌ଦର୍ଶନ ଅନ୍ୟ କାହାଠାରୁ ଆଶା କରାଯାଇପାରେ ନାହିଁ । ସେଥିପାଇଁ ତାଙ୍କ ସମୟର କୌଣସି ନେତା ଏଥିପାଇଁ ଦ୍ୱିଧାବୋଧ କରୁ ନଥିଲେ । ତାଙ୍କ ପରାମର୍ଶର ଧନୁର୍ବାଣ ସବୁବେଳେ ଅବ୍ୟର୍ଥ । ସେ ବହୁ ନେତାଙ୍କର ରାଜନୈତିକ ଗୁରୁ ବହୁ ନେତା ଗଢିଥିବା ସେହି ବୁଦ୍ଧିଜୀବୀ ରାଜନୈତିଜ୍ଞଙ୍କୁ ଓଡ଼ିଶା ଖୋଜୁଚି । ଯାହାଙ୍କ ମୂରବୀତ୍ୱରେ ପୁଣି ଥରେ ସକ୍ରିୟ ହୋଇ ଉଠିବ ସଂସ୍କୃତି, ସ୍ୱାସ୍ଥ୍ୟ, ଶିକ୍ଷା, ଶିଳ୍ପ, ଭାସର୍ଯ୍ୟ, କୃଷି, ସାହିତ୍ୟ ଆଉ ରାଜନୀତି ।



# ରାଷ୍ଟ୍ରଗଠନର ଦୁଇ ମହାନ ନେତା
# ସର୍ଦ୍ଦାର ପଟେଲ ଓ ମହତାବ

## ବିଶ୍ୱେଶ୍ୱର ଦେ

ସ୍ୱାଧୀନତା ପରେ ଓଡ଼ିଶାକୁ ଏକ ସମୃଦ୍ଧଶାଳୀ ରାଜ୍ୟ ଭାବେ ଗଢ଼ି ତୋଳିବା ପାଇଁ ଡ. ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଯେଉଁ ତିନୋଟି ମୁଖ୍ୟ କାର୍ଯ୍ୟ କରାଯାଇଥିଲା ତାହାହେଲା ଗଡ଼ଜାତ ମିଶ୍ରଣ ଦ୍ୱାରା ସମଗ୍ର ଓଡ଼ିଶାର ଏକତ୍ରିକରଣ, ହୀରାକୁଦଠାରେ ବିରାଟ ନଦୀବନ୍ଧ ଯୋଜନା କରାଯାଇ ତଳିଆ ଅଞ୍ଚଳର ଜନସାଧାରଣଙ୍କୁ ବନ୍ୟା ଦାଉରୁ ରକ୍ଷା କରିବା ସହିତ କୃଷି ପାଇଁ ଜଳ ଏବଂ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ନିମନ୍ତେ ହୀରାକୁଦ ବନ୍ଧ ନିର୍ମାଣ ଏବଂ ଭୁବନେଶ୍ୱରରେ ଓଡ଼ିଶାର ନୂଆ ରାଜଧାନୀ ଯୋଜନାବଦ୍ଧ ଭାବେ ପ୍ରତିଷ୍ଠା କରି ଓଡ଼ିଶାକୁ ଅନ୍ୟାନ୍ୟ ଅଗ୍ରଣୀ ରାଜ୍ୟ ସହିତ ସମକକ୍ଷ କରେଇବା ନିମନ୍ତେ ଆନ୍ତରିକ ପ୍ରୟାସ କରିଥିଲେ ହରେକୃଷ୍ଣ ମହତାବ । ତାପରେ ପରବର୍ତ୍ତୀ ସମୟରେ ବିଜୁ ପଟ୍ଟନାୟକଙ୍କର ନେତୃତ୍ୱ କାଳରେ ବିଜୁ ପଟ୍ଟନାୟକଙ୍କର ସାହସିକତା, ଦୂରଦୃଷ୍ଟି ଏବଂ ଓଡ଼ିଶାର ଅର୍ଥନୈତିକ ବିକାଶ ନିମନ୍ତେ ଶିଳାନ୍ୟାସ କରଯାଇଥିଲା ପାରାଦ୍ୱୀପ ବନ୍ଦର ଯାହା ଓଡ଼ିଶାକୁ ଦେଶ ବିଦେଶ ସହିତ ସଂଯୋଗ କରିଛି। ଏହି ଉପରୋକ୍ତ ତିନୋଟି ମୁଖ୍ୟ କାର୍ଯ୍ୟ ହୀରାକୁଦ ବନ୍ଧର ଶିଳାନ୍ୟାସ, ଭୁବନେଶ୍ୱରର ନୂଆ ରାଜଧାନୀ ପ୍ରତିଷ୍ଠାର ଶିଳାନ୍ୟାସ ଏବଂ ପାରାଦ୍ୱୀପଠାରେ ଏକ ବୃହତ୍ ବନ୍ଦର ପ୍ରତିଷ୍ଠା ପାଇଁ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ଓଡ଼ିଶା ଆସି ଶିଳାନ୍ୟାସ କରିଥିଲେ ।

ଗଡ଼ଜାତ ମିଶ୍ରଣ ସମୟରେ ତତ୍କାଳୀନ ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ କଟକ ଆସି ଓଡ଼ିଶାର ସମସ୍ତ ଗଡ଼ଜାତର ରାଜାମାନଙ୍କୁ ଏକ ସମ୍ମିଳନୀକୁ ଡକାଇ ସେମାନେ ଓଡ଼ିଶା ସହିତ ମିଶିବେ ବୋଲି ଏକ ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିଲେ । ଏହି କାର୍ଯ୍ୟ ମଧ ହରେକୃଷ୍ଣ ମହତାବଙ୍କର ଦୃଢ଼ ଇଚ୍ଛାଶକ୍ତି, ରାଜନୈତିକ ଦୂରଦୃଷ୍ଟି ଏବଂ କୌଶଳ ଯୋଗୁ ଓଡ଼ିଶାର ସମସ୍ତ ଅଞ୍ଚଳ ଏକ ଶାସନାଧୀନ ହୋଇପାରିଥିଲା । ଏହି କାର୍ଯ୍ୟ ଓଡ଼ିଶାରୁ ଆରମ୍ଭ ହେବା ପରେ ପରେ ଭାରତବର୍ଷରେ ଥିବା ସମସ୍ତ ଛୋଟବଡ଼ ଦେଶୀୟ ରାଜ୍ୟ ଭାରତବର୍ଷରେ ଅଙ୍ଗୀଭୂତ ହେଲେ । ଭୁବନେଶ୍ୱରରେ ନୂଆ ରାଜଧାନୀ, ରାଜ୍ୟ ସଚିବାଳୟ, ରାଜଭବନ, କଟକର ବାରବାଟୀ ଷ୍ଟାଡ଼ିୟମ୍ ଏ ସମସ୍ତ ହରେକୃଷ୍ଣ ମହତାବଙ୍କର ଜୀବନର ଗୋଟିଏ ଗୋଟିଏ ଅକ୍ଷୟ କୀର୍ତ୍ତି । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ଡଃ ମହତାବଙ୍କ ଅବଦାନ ବିଷୟରେ ଓଡ଼ିଶାବାସୀ ଅବଗତ ।

ବାଲେଶ୍ୱର ଜିଲ୍ଲା ବନ୍ତ ଥାନା ଅନ୍ତର୍ଗତ ଅଗରପଡ଼ା ଗ୍ରାମରେ ଜନ୍ମିତ ହରେକୃଷ୍ଣ ମହତାବ ୨୦ ବର୍ଷ ବୟସରେ ବି.ଏ. ପରୀକ୍ଷା ଦେବାପୂର୍ବରୁ ଜାତିରଜନକ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ତାଙ୍କର ଦୃଢ଼ ସାଙ୍ଗଠନିକ ଶକ୍ତିର ପରିଚୟ ଦେଇଥିଲେ ଏବଂ ଅତି କମ୍ ବୟସରେ ନିଖିଳ ଭାରତ କଂଗ୍ରେସ କମିଟିର କାର୍ଯ୍ୟକାରୀ କମିଟିର ସଭ୍ୟ ହୋଇ ପାରିଥିଲେ । ପୁଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁ ଓଡ଼ିଶାରେ କଂଗ୍ରେସର ବାର୍ତ୍ତା ପ୍ରଥମେ ପ୍ରଚାର କରାଇଥିଲେ ଏବଂ ମହାତ୍ମା ଗାନ୍ଧୀଙ୍କୁ ଓଡ଼ିଶାକୁ ନିମନ୍ତ୍ରଣ କରି କାଠଯୋଡ଼ି ନଦୀର ବାଲୁକାଶଯ୍ୟାରେ ବିରାଟ ସାଧାରଣ ସଭା କରି ଓଡ଼ିଶାର ଗ୍ରାମ୍ୟାଞ୍ଚଳରେ ଗାନ୍ଧିଜୀଙ୍କର ବାର୍ତ୍ତା ପ୍ରଚାର କରିଥିଲେ । ଗାନ୍ଧିଜୀଙ୍କ ବାର୍ତ୍ତାକୁ ଲୋକଙ୍କ ପାଖରେ ପହଞ୍ଚାଇ ସ୍ୱାଧୀନତା ସଂଗ୍ରାମ ପାଇଁ ସାଧାରଣ ଲୋକମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିବା ଉଦ୍ଦେଶ୍ୟରେ ମହତାବ ପ୍ରତିଷ୍ଠା କରିଥିଲେ ସାପ୍ତାହିକ "ପ୍ରଜାତନ୍ତ୍ର" । ରଣପୁରର ବେଜେଲଗେଟ୍ ହତ୍ୟାକାଣ୍ଡ ଏବଂ କନିକା ପ୍ରଜାମେଳି ଭଳି ସଂଗ୍ରାମପୂର୍ଣ୍ଣ ଘଟଣାରେ ହରେକୃଷ୍ଣ ମହତାବଙ୍କର ବିଚକ୍ଷଣ ବୁଦ୍ଧିମତାର ପରିଚୟ ମିଳିଥିଲା । ଭାରତବର୍ଷର ମାନଚିତ୍ରରେ ଓଡ଼ିଶାକୁ ସମ୍‌କକ୍ଷ କରାଇବା ନିମନ୍ତେ ବିକାଶର ଯେଉଁ ଆଦ୍ୟ ପର୍ବ ଆରମ୍ଭ କରାଯାଇଥିଲା ତା'ର ସୁଦୂରପ୍ରସାରୀ ପ୍ରତିଫଳନ ଆଜିର ଓଡ଼ିଶା । ସେ ଜିଲ୍ଲା ବୋର୍ଡ ଚେୟାରମ୍ୟାନଠାରୁ ଆରମ୍ଭ କରି ବିଧାନସଭା, ଲୋକସଭା, ମୁଖ୍ୟମନ୍ତ୍ରୀ,

କେନ୍ଦ୍ରମନ୍ତ୍ରୀ ଓ ରାଜ୍ୟପାଳ ଭାବେ ଅଧିଷ୍ଠିତ ହୋଇ ନିଜର ଦକ୍ଷତା ଓ ଲୋକପ୍ରିୟତା ପ୍ରମାଣ ଦେଇଯାଇଛନ୍ତି । ତାଙ୍କଦ୍ୱାରା କରାଯାଉଥିବା ଓଡ଼ିଶାର ବହୁବିଧ କଲ୍ୟାଣକାରୀ ଯୋଜନାର ଲମ୍ବା ତାଲିକା ଏଠାରେ ଉଲ୍ଲେଖ କରିବା ଅନାବଶ୍ୟକ । ସେ ଥିଲେ ଏକାଧାରରେ ଜଣେ ବଳିଷ୍ଠ ସଂଗଠକ, ସର୍ବଭାରତୀୟ ସ୍ତରର ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ, ସମାଜ ସଂସ୍କାରକ, ଐତିହାସିକ, ରାଜନୀତିଜ୍ଞ ଏବଂ ଲୋକପ୍ରିୟ ଜନ ନେତା । ଜନସମ୍ପର୍କ ରକ୍ଷା କ୍ଷେତ୍ରରେ ତାଙ୍କର ଦୈନନ୍ଦିନର କାର୍ଯ୍ୟଶୈଳୀ ଥିଲା ଆଦର୍ଶ ସ୍ଥାନୀୟ । ତାଙ୍କ ଦ୍ୱାରା ପ୍ରକାଶିତ 'ଗାଁ ମଜଲିସ୍' ଯାହା ପ୍ରଜାତନ୍ତ୍ର ପୃଷ୍ଠାରେ ପ୍ରତ୍ୟହ ପ୍ରକାଶ ପାଉଥିଲା ତାହା ପଢ଼ିବା ପାଇଁ ସୁଦୂର ଗ୍ରାମାଞ୍ଚଳର ଲୋକେ ଉତ୍କଣ୍ଠାର ସହିତ ଅପେକ୍ଷା କରୁଥିଲେ । ପ୍ରଶାସନକୁ ଦୋଷତ୍ରୁଟି ଦେଖାଇ ବିଭିନ୍ନ ସମସ୍ୟାରେ ଜନସାଧାରଣଙ୍କୁ ସଠିକ୍ ମାର୍ଗ ବତାଉଥିଲା ଗାଁ ମଜଲିସ୍। ମହତାବଙ୍କ ସ୍ମରଣ ଶକ୍ତି ମଧ ଥିଲା ଅତ୍ୟନ୍ତ ପ୍ରଖର। ସାରା ରାଜ୍ୟର କର୍ମୀମାନଙ୍କର ଆପଦ ବିପଦ ସମୟରେ ମହତାବ ବାବୁଙ୍କ ହାତଲେଖା ପୋଷ୍ଟକାର୍ଡ ସେମାନଙ୍କର ଘରେ ଯାଇ ପହଞ୍ଚୁଥିଲା ଯଦ୍ୱାରା ସେମାନଙ୍କର ବିପଦବେଳେ ସେମାନଙ୍କୁ ଯଥେଷ୍ଟ ସାନ୍ତ୍ୱନା ଓ ଶକ୍ତି ଯୋଗାଉଥିଲା। ସେ ଥିଲେ ଖାଣ୍ଟି ଗଣତନ୍ତ୍ରରେ ବିଶ୍ୱାସୀ। ସେ କେବେହେଲେ ତାଙ୍କ ମତକୁ ଅନ୍ୟମାନଙ୍କ ଉପରେ ଲଦି ଦେଇ ନଥିଲେ ବରଂ ତାଙ୍କ ଦରବାରରେ ସେ ବିଭିନ୍ନ ବିଷୟ ଆଲୋଚନା କରିବା ପରେ ତାଙ୍କ ମତ ହିଁ କାୟମ୍ ରହୁଥିଲା ଏବଂ ତାହା ଠିକ୍ ବୋଲି ସାବ୍ୟସ୍ତ ହେଉଥିଲା ।

ଲବଣ ସତ୍ୟାଗ୍ରହରେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହ ସାରା ଭାରତବର୍ଷରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ସେହି ସତ୍ୟାଗ୍ରହର ସଂଗଠକ ଥିଲେ ହରେକୃଷ୍ଣ ମହତାବ। ଜନମତ ସୃଷ୍ଟି କରିବା କ୍ଷେତ୍ରରେ ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ । ସ୍ୱାଧୀନତା ପୂର୍ବରୁ ଓ ସ୍ୱାଧୀନତା ପରେ ମହତାବ ଥିଲେ ସର୍ବଭାରତୀୟ ସ୍ତରର ଜନନେତା । ସେହି ପ୍ରବାଦ ପୁରୁଷଙ୍କ ଜନ୍ମତିଥିରେ ମୁଁ ଓଡ଼ିଶାବାସୀଙ୍କ ସହିତ ମୋର ବିନମ୍ର ପ୍ରଣିପାତ ଜଣାଉଛି ।

ପୁରୁଣା ସଚିବାଳୟ ମାର୍ଗ

କଟକ-୧



# ମହାନ୍ ଜନନାୟକ ମହତାବ

## ନୃସିଂହ ଚରଣ ସାହୁ

ମହାନ୍ ଜନନାୟକ ହରେକୃଷ୍ଣ ମହତାବଙ୍କ ହୃଦୟରେ ବାଲ୍ୟକାଳରୁ ଦେଶପ୍ରେମର ବହ୍ନି ପ୍ରଜ୍ୱଳିତ ହୋଇଥିଲା। ଭଦ୍ରକ ହାଇସ୍କୁଲର ଛାତ୍ରଥିବା ସମୟରେ ମଧ୍ୟ ସେ ବ୍ରିଟିଶ୍ ଶାସକମାନଙ୍କୁ ଦେଶର ଶତ୍ରୁ ରୂପେ ଦେଖିଥିଲେ ଏବଂ ନିଜର ସାଧ୍ୟମତେ ସେମାନଙ୍କୁ ଅପଦସ୍ଥ କରିବାକୁ ଚେଷ୍ଟା କରିଥିଲେ। ରେଭେନ୍ସା କଲେଜରେ ଅଧ୍ୟୟନ ସମୟରେ ଭାରତକୁ ସ୍ୱାଧୀନ କରିବାପାଇଁ ଗାନ୍ଧିଜୀଙ୍କ ଆହ୍ୱାନ୍ ତାଙ୍କ ପ୍ରାଣରେ ଉଦ୍‌ବେଳନ ସୃଷ୍ଟି କଲା। ବି.ଏ. ପାଠର ଶେଷ ବର୍ଷ, ପରୀକ୍ଷା ମୁଣ୍ଡ ଉପରେ। ମାତ୍ର ୧୯୨୦ ମସିହା ସେପ୍ଟେମ୍ବର ମାସରେ କଲିକତାଠାରେ ଆୟୋଜିତ କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନକୁ ଲୁଚିକରି ପଳାଇଗଲେ। ଗାନ୍ଧିଜୀ ସେତେବେଳର ଭାରତବର୍ଷର ତୁଙ୍ଗ ନେତୃବୃନ୍ଦଙ୍କ ନିକଟରେ ବୟସରେ ଯଥେଷ୍ଟ ସାନଥିଲେ ମଧ୍ୟ ତାଙ୍କର ଅହିଂସା ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହୋଇଗଲା। ଏହା ତରୁଣ ମହତାବଙ୍କ ପ୍ରାଣରେ ଉତ୍ସାହ ଓ ପ୍ରେରଣା ଭରିଦେଲା। ତା'ପରେ ସେ ଆଉ ପଛକୁ ଫେରି ଚାହିଁଲେ ନାହିଁ। ସ୍ୱାଧୀନତା ସଂଗ୍ରାମର ଅଗ୍ନି କୁଣ୍ଡରେ ଝାସ ଦେଲେ।

୧୯୨୧ ମସିହା ମାର୍ଚ୍ଚମାସରେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ ସମୟରେ ମହତାବ ତାଙ୍କର ସହଯାତ୍ରୀ ପାଲଟିଗଲେ। ଆରମ୍ଭ କଲେ ବାଲେଶ୍ୱରରେ କଂଗ୍ରେସ ସଂଗଠନ। 'ସ୍ୱରାଜ ମନ୍ଦିର'କୁ ସକ୍ରିୟ ଓ ଚଳଚଞ୍ଚଳ କରିବା ତଥା ବାଲେଶ୍ୱରର ଚାରିଆଡେ ଗାନ୍ଧିଜୀଙ୍କ ବାର୍ତ୍ତା ପ୍ରସାର ନିମନ୍ତେ ସେ ନିଜର ପୈତୃକ ସମ୍ପତ୍ତି ବହୁ ପରିମାଣରେ ବିକ୍ରି କରିଦେଲେ। 'ସାପ୍ତାହିକ ପ୍ରଜାତନ୍ତ୍ର' ସମ୍ବାଦପତ୍ର ମାଧ୍ୟମରେ ଅହିଂସା ଆନ୍ଦୋଳନର

ବାର୍ତ୍ତା ପ୍ରସାର କଲେ । ଚତୁର୍ଦ୍ଦିଗରେ ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମ ରୂପାୟନ ନିମନ୍ତେ କର୍ମୀମାନଙ୍କୁ ସଂଗଠିତ କଲେ ।

୧୯୨୦ରୁ ଆରମ୍ଭ ହୋଇଥିଲା ମହତାବଙ୍କର ନୂଆଜୀବନ, ଜେଲ ଜୀବନ, ଲାଠିମାଡ଼ଖିଆ ଜୀବନ, ଭୋକଉପବାସର ଜୀବନ । ୧୯୪୨ ଅଗଷ୍ଟ ବିପ୍ଳବରେ ଯୋଗଦେଇ ଭାରତର ବଛାବଛା ୨୧ ଜଣ ମହାଯୋଦ୍ଧାଙ୍କ ସହ ସେ ଅହମ୍ମଦ ନଗର ଦୁର୍ଗରେ ଦୀର୍ଘ ତିନିବର୍ଷ କାଳ ବନ୍ଦୀଜୀବନ କଟାଇଲେ । ସେତେବେଳେ ସେ କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷର ଅନ୍ୟତମ ମହାନ୍ ଜାତୀୟ ନେତାଭାବେ ସୁନାମର ଅଧିକାରୀ ହୋଇଯାଇଥିଲେ ।

ଜେଲରୁ ମୁକ୍ତି ପାଇବା ପରେ ୧୯୪୬ ମସିହା ନିର୍ବାଚନରେ ପୁଣିଥରେ ମହତାବଙ୍କ ଅଭୂତପୂର୍ବ ସାଙ୍ଗଠନିକ ଶକ୍ତି ପ୍ରମାଣିତ ହେଲା । ସେତେବେଳକୁ ଓଡ଼ିଶା କାହିଁକି, ସମଗ୍ର ଭାରତରେ ଜାତୀୟ ସ୍ତରରେ ସେ ଜଣେ ମହାନ୍ ଜନନାୟକ । ଏପ୍ରିଲ ୪ରୁ ୯ ତାରିଖ ଯାଏଁ ଅନୁଷ୍ଠିତ ନିର୍ବାଚନରେ କଂଗ୍ରେସ ଦଳବିଜୟୀ ହେଲା । ବିରୋଧୀ ଦଳ ନିଶ୍ଚିହ୍ନ ହୋଇଗଲା । ମୋଟ ୫୬ଟି ଆସନରୁ କଂଗ୍ରେସ ଦଳ ୪୭ଟି, ମୁସଲିମ୍ ଲିଗ୍ ୪ଟି ଓ କମ୍ୟୁନିଷ୍ଟ ଦଳ ଗୋଟିଏ ଆସନ ପାଇଲେ । ଅନ୍ୟ ୪ଟି ଆସନରେ ବିଧାୟକଙ୍କୁ ଗଭର୍ଣ୍ଣର ମନୋନୟନ କଲେ । ଓଡ଼ିଶା ବ୍ୟବସ୍ଥାପକ ସଭାର ନେତୃତ୍ୱନେଇ ମହାତବ ୧୯୪୬ ଏପ୍ରିଲ ୨୩ ତାରିଖରେ ପାଞ୍ଚ ଜଣିଆ ନୂତନ ମନ୍ତ୍ରିମଣ୍ଡଳ ଗଠନ କଲେ । ଏଥିରେ ସେ ପ୍ରଧାନମନ୍ତ୍ରୀ ରହିଲେ । ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଧାକୃଷ୍ଣ ବିଶ୍ୱାସରାୟ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ମନ୍ତ୍ରୀ ରହିଲେ ।

ସ୍ୱାଧୀନତା ପୂର୍ବରୁ ଲର୍ଡ଼ ୱାଭେଲ ମହତାବଙ୍କ ଦକ୍ଷ ନେତୃତ୍ୱ ଓ ଦୂରଦୃଷ୍ଟିରେ ପ୍ରୀତ ହୋଇ ତାଙ୍କୁ କେନ୍ଦ୍ରରେ ଅସ୍ଥାୟୀ ମନ୍ତ୍ରିମଣ୍ଡଳର ସଭ୍ୟଭାବେ ମନୋନୀତ କରିଥିଲେ । ମାତ୍ର ସେ ତାହା ପ୍ରତ୍ୟାଖ୍ୟାନ କରିଦେଲେ । ଦୀର୍ଘଦିନ ଧରି ପରାଧୀନ, ଅତ୍ୟାଚାରିତ ଓ ନିଷ୍ପେଷିତ ଓଡ଼ିଶାବାସୀ ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗିଛନ୍ତି । ସେମାନଙ୍କ ପ୍ରାଣରେ ଟିକେ ଆଶା ଓ ଆନନ୍ଦ ଭରିଦେବାପାଇଁ ସେ ଓଡ଼ିଶାରେ ରହିବାକୁ ସ୍ଥିର କଲେ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତର ସ୍ୱାଧୀନତା ଲାଭପରେ ସେ ଓଡ଼ିଶାର ନବ ନିର୍ମାଣରେ ନିଜକୁ ନିୟୋଜିତ କଲେ । ଏହି ସମୟରେ ସେ ଅନେକ

ଗୁଡିଏ ଯୁଗାନ୍ତକାରୀ ପଦକ୍ଷେପ ଗ୍ରହଣ କଲେ। ଭାରତବର୍ଷରେ ଓଡ଼ିଶାକୁ ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରାଇବା ଚେଷ୍ଟାରେ ପ୍ରାଣପଣେ ଲାଗିପଡିଲେ। ୧୯୪୬ ମସିହାରୁ ୧୯୫୦ ମସିହା ଚାରିବର୍ଷ ମଧ୍ୟରେ ସେ ଗ୍ରହଣ କରିଥିବା ପଦକ୍ଷେପ ଗୁଡିକ ମଧ୍ୟରେ ଗଡ଼ଜାତ ମିଶ୍ରଣ, ହୀରାକୁଦଠାରେ ମହାନଦୀବନ୍ଧ ଯୋଜନା, ଭୁବନେଶ୍ୱରରେ ନୂତନ ରାଜଧାନୀ ନିର୍ମାଣ, ସାହିତ୍ୟ ଓ ସଂସ୍କୃତିର ପୁନର୍ଜାଗରଣ ପାଇଁ ଦୈନିକ ସମ୍ବାଦପତ୍ର 'ପ୍ରଜାତନ୍ତ୍ର' ପ୍ରକାଶନ ଓ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଗଠନ, କଟକରେ ହାଇକୋର୍ଟ, ଆକାଶବାଣୀ କେନ୍ଦ୍ର, ଚୌଦ୍ୱାରରେ ଲୁଗାକାରଖାନା, ରାଉରକେଲାରେ ଇସ୍ପାତ କାରଖାନା ପ୍ରତିଷ୍ଠାପାଇଁ ବିଦେଶୀ ରାଷ୍ଟ୍ରଙ୍କ ସହ ଆଲୋଚନା, ପାରାଦ୍ୱୀପ ବନ୍ଦରର ଭିତ୍ତି ସ୍ଥାପନ, ରାଜଗାଙ୍ଗପୁରରେ ସିମେଣ୍ଟ କାରଖାନା, ବ୍ରଜରାଜ ନଗରରେ କାଗଜକଳ, ବ୍ରହ୍ମପୁରଠାରେ ବନସ୍ପତି ତୈଳ କାରଖାନା, ଭୁବନେଶ୍ୱରରେ କୃଷି ବିଶ୍ୱବିଦ୍ୟାଳୟ, ପୁରୀ ଶ୍ରୀମନ୍ଦିରରେ ହରିଜନ ପ୍ରବେଶ ଓ ଜମିଦାରୀ ଉଚ୍ଛେଦପାଇଁ ପ୍ରସ୍ତୁତି ଉଲ୍ଲେଖନୀୟ। ଏହାକୁ ଆଧୁନିକ ଓଡ଼ିଶା ଇତିହାସର ସୁବର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ।

ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଓ ଲର୍ଡ଼ ମାଉଣ୍ଟ ବେଟନଙ୍କ ପ୍ରସ୍ତାବରେ ସେ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗଦେଇ ୧୯୫୦ ମସିହା ମେ ମାସ ୧୩ ତାରିଖ ଦିନ କାର୍ଯ୍ୟଭାର ଗ୍ରହଣ କଲେ। ମାତ୍ର କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗଦେବାପାଇଁ ସେ ଦିଲ୍ଲୀକୁ ଚାଲିଯିବାପରେ ଓଡ଼ିଶାରେ ତାଙ୍କର ଦୃଢ଼ ରାଜନୈତିକ ସ୍ଥିତିକୁ ଦୋହଲାଇ ଦେବାର ଚେଷ୍ଟା ଚାଲିଲା। ଓଡ଼ିଶାର ସାମୂହିକ ଉନ୍ନତିପାଇଁ ସେ ଯେତେ ଅଭିନବ ଉଦ୍ୟମ ଆରମ୍ଭ କରିଥିଲେ, ତାକୁ ପଣ୍ଡ କରିବାପାଇଁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀପକ୍ଷରୁ ପ୍ରବଳ ଚକ୍ରାନ୍ତ ଆରମ୍ଭ ଚାଲିଲା। ତେଣୁ ସେ ୧୯୫୬ ମସିହା ଅକ୍ଟୋବର ମାସରେ ଭାରତର ସମୃଦ୍ଧତମ ରାଜ୍ୟ ଅବିଭକ୍ତ ବମ୍ବେ ପ୍ରଦେଶର ରାଜ୍ୟପାଳ ପଦବୀକୁ ପରିତ୍ୟାଗ କରି ପୁଣି ଓଡ଼ିଶାର ସେବା କରିବାପାଇଁ ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀତ୍ୱ ଗ୍ରହଣ କଲେ।

ମହତାବ ଶପଥ ନେଲେ ୧୯୫୬ ମସିହା ଅକ୍ଟୋବର ମାସ ୧୯ ତାରିଖରେ। କିନ୍ତୁ ଚାରିଟା ମାସପରେ ମାର୍ଚ୍ଚ ମାସରେ ନିର୍ବାଚନ। ଏତେ ଅଳ୍ପ ସମୟ ମଧ୍ୟରେ କଂଗ୍ରେସ ପ୍ରତି ଜନସାଧାରଣଙ୍କ ପୂର୍ବ ଆସ୍ଥା ଓ ବିଶ୍ୱାସ ଫେରିପାରିଲା ନାହିଁ। ୧୪୦ଟି ସ୍ଥାନରୁ ତଥାପି ୫୬ଟି ସ୍ଥାନରେ କଂଗ୍ରେସ ବିଜୟୀ ହେଲା। କେତେକ ସ୍ୱାଧୀନ, ଝାଡ଼ଖଣ୍ଡ ଓ



ବମ୍ବେରେ ସାଉଦୀ ଆରବର ପ୍ରୀତିଉପହାର ପ୍ରଦାନ କରୁଛନ୍ତି ଡକ୍ଟର ମହତାବ ।
ପାର୍ଶ୍ୱରେ ମୁଖ୍ୟମନ୍ତ୍ରୀ ମୋରାରଜୀ ଦେଶାଇ (୧୯୫୬)

କମ୍ୟୁନିଷ୍ଟ ସଦସ୍ୟଙ୍କର ସମର୍ଥନରେ ସେ ସରକାର ଗଢ଼ିଲେ।

୧୯୫୭ ମସିହା ଏପ୍ରିଲ ମାସ ୬ ତାରିଖରେ ମହତାବବାବୁ ମୁଖ୍ୟମନ୍ତ୍ରୀଭାବେ ଶପଥ ନେଲେ। ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ ମନ୍ତ୍ରୀମଣ୍ଡଳ ଗଠନ କଲେ। କିନ୍ତୁ ସେ ସରକାର ଟଳମଳ ଅବସ୍ଥାରେ ରହିଲା।

ରାଜନୈତିକ ଅସ୍ଥିରତା ସତ୍ତ୍ୱେ ଦ୍ୱିତୀୟ ପର୍ଯ୍ୟାୟ ଶାସନ ଦାୟିତ୍ୱ ନିର୍ବାହ ସମୟରେ ଯେଉଁ କେତୋଟି ଉଲ୍ଲେଖନୀୟ କାର୍ଯ୍ୟ ସେ ହାତକୁ ନେଇଥିଲେ, ତାହା ହେଲା- ବନ୍ଦ ହୋଇଯାଇଥିବା ରାଜଧାନୀ ନିର୍ମାଣ କାର୍ଯ୍ୟ ସମ୍ପନ୍ନ। କଟକରୁ ଭୁବନେଶ୍ୱରକୁ ସରକାରୀ ଅଫିସ୍ ସ୍ଥାନାନ୍ତର, ଭୁବନେଶ୍ୱରରେ ଓଡ଼ିଶାର ମ୍ୟୁଜିୟମ୍ ପ୍ରତିଷ୍ଠା, ନନ୍ଦନକାନନ,

ରାଜଭବନ, ବିଧାନସଭା ଓ ସଚିବାଳୟ ସୌଧ ନିର୍ମାଣ, ସାହିତ୍ୟ ସଙ୍ଗୀତ ଓ ଲଳିତ କଳା ଏକାଡେମୀ ପ୍ରତିଷ୍ଠା, ସାଂସ୍କୃତିକ ଉତ୍ସବ ଓ ସଭାସମିତି ପାଇଁ ଭଞ୍ଜ କଳାମଣ୍ଡପ ଓ ରୀବନ୍ଦ୍ର ମଣ୍ଡପ ନିର୍ମାଣ ଓ ଭୁବନେଶ୍ୱରରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାୟୀ ସୌଧ ନିର୍ମାଣ ଇତ୍ୟାଦି ।

ଓଡ଼ିଶାକୁ ସମଗ୍ର ଭାରତବର୍ଷରେ ଏକ ଆତ୍ମସମ୍ମାନ ସମ୍ପନ୍ନ ସମୃଦ୍ଧ ରାଜ୍ୟ ରୂପେ ଗଢ଼ିତୋଳିବାକୁ ଡକ୍ଟର ମହତାବଙ୍କ ଆଜୀବନ ସାଧନାର ପଟାନ୍ତର ନାହିଁ । ଶାସନରେ ଥାଆନ୍ତୁ ବା ନଥାଆନ୍ତୁ, ଓଡ଼ିଶାର ସ୍ୱାର୍ଥରକ୍ଷା ଲାଗି, ଓଡ଼ିଆ ପୁଅଙ୍କୁ ଯଶସ୍ୱୀ କରିବାପାଇଁ ସେ ଅହରହ ଉଦ୍ୟମ କରିଥିଲେ । କେବଳ ଅର୍ଥନୈତିକ ସମୃଦ୍ଧି ନୁହେଁ, କୃଷି ଓ ଶିଳ୍ପର ବିକାଶ ସାଙ୍ଗକୁ କଳା, ସାହିତ୍ୟ, ସଂସ୍କୃତି ଓ ଶିକ୍ଷା କ୍ଷେତ୍ରରେ ଓଡ଼ିଶାକୁ ଆଗେଇ ନେବାପାଇଁ ତାଙ୍କ ମହାନ୍ ଅବଦାନ ଯୁଗଯୁଗ ପାଇଁ ଉତ୍ତରପିଢ଼ିଙ୍କୁ ପ୍ରେରଣା ଓ ଉତ୍ସାହ ଯୋଗାଉଥିବ - ଏହା ନିଃସନ୍ଦେହ ।

ଆଜିର ପୂଣ୍ୟ ଜନ୍ମତିଥିରେ ଏହି ମହାନ କର୍ମଯୋଗୀଙ୍କୁ ଆମର କୋଟି କୋଟି ପ୍ରଣାମ ।

*ସମ୍ପାଦକ*
*ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ*
*ମୋ-୮୭୬୩୩୩୨୬୬୩*



# ଉତ୍କଳକେଶରୀଙ୍କ କାଳାତୀତ କୃତି

## କାଳିକିଙ୍କର

ଶିକ୍ଷା, ସାହିତ୍ୟ, ସଂସ୍କୃତି, କଳା, କାରିଗରୀ, ନୃତ୍ୟ, ସଂଗୀତ, ଶିଳ୍ପ ଓ ସୌନ୍ଦର୍ଯ୍ୟର ମହାନ ଭୂମୀ ଥିଲା ଉତ୍କଳ ଯାହାକୁ ଆମେ ଆଜିର ଓଡିଶା ବୋଲି ଜାଣୁ । ପୁଣି ସେହି ଉତ୍କଳର ଭୂମୀ ବାଲେଶ୍ୱର ଥିଲା ପ୍ରାଚୀନ ଉତ୍କଳର ବହୁବିଧ ସମୃଦ୍ଧିର ବେଳାଭୂମୀ । ୧୮୯୯ ମସିହା ନଭେମ୍ବର ୨୧ ତାରିଖ ଦିନ ବାଲେଶ୍ୱର ଜିଲ୍ଲାର ଅଗରପଡା ଗାଁର ଏକ ଅତି ସାଧାରଣ ପରିବାରର ହରେକୃଷ୍ଣ ଦାସ ଓରଫ ମହତାବଙ୍କର ଜନ୍ମ । ତାଙ୍କ ପିତା କୃଷ୍ଣ ଚନ୍ଦ୍ର ଦାସ ଜଣେ ଗରିବ ବ୍ୟକ୍ତି ହୋଇଥିଲେ ମଧ୍ୟ ବୁଦ୍ଧି ଓ ବିଦ୍ୟାରେ ବହୁତ ବିଚକ୍ଷଣ ଥିଲେ ଯେଉଁଥିପାଇଁ ଜମିଦାର ଜଗନ୍ନାଥ ମହତାବ ତାଙ୍କର ଏକମାତ୍ର କନ୍ୟାଙ୍କୁ ତାଙ୍କୁ ବିବାହ ଦେଇଥିଲେ । ପିଲାଟି ଦିନରୁ ହରେକୃଷ୍ଣ ଭିନ୍ନ ପ୍ରକାରର ଥିଲେ । ତାଙ୍କ ଭିତରେ ଭଲ ପାଇବାର ଭାବ ପ୍ରବଣତା ଏତେ ଅଧିକ ଥିଲା ଯେ କାହାର ସାମାନ୍ୟ ଦୁଃଖ ଦେଖିଲେ ଆଖିରୁ ଲୁହ ଝରାଉଥିଲେ । ଶହୀଦ୍ ବାଘା ଯତୀନ୍‌ଙ୍କର ଉତ୍ସର୍ଗୀକୃତ ଜୀବନ ତାଙ୍କୁ ବହୁତ ପ୍ରଭାବିତ କରିଥିଲା । ଏହାଛଡା ପ୍ରଥମ ବିଶ୍ୱଯୁଦ୍ଧର ପରିଣାମ ମଧ୍ୟ ତାଙ୍କ ହୃଦୟକୁ ଆନ୍ଦୋଳିତ କରିଥିଲା । ଏହାଛଡା ରାମ କୃଷ୍ଣ ମିଶନର କାର୍ଯ୍ୟାବଳି ତଥା ସ୍ୱାମୀ ବ୍ରହ୍ମାନନ୍ଦଙ୍କର ପ୍ରେରଣା ତାଙ୍କୁ ଜଣେ ଦେଶ ଓ ଜାତିପ୍ରାଣ ସୈନୀକ ହେବାରେ ବହୁତ ପ୍ରେରଣା ଯୋଗାଇଥିଲା । ଏହାଛଡା ବାଳ ଗଙ୍ଗାଧର ତିଳକ ଓ ଉତ୍କଳମଣି ଗୋପବନ୍ଧୁ ତାଙ୍କ ଜୀବନର ପଥରେ ପଥ ପ୍ରଦର୍ଶକ ହୋଇ ଛିଡା ହେଲେ । ବିଶେଷ ଭାବରେ ମହାତ୍ମା ଗାନ୍ଧିଙ୍କର ଓଡିଶା ରହଣି କାଳରେ ତାଙ୍କ ସହ ସମୟ ବିତାଇବାର ଯେଉଁ ସୁଯୋଗ ସେ ପାଇଲେ ତାହା ତାଙ୍କୁ ଏ ଦେଶ ଓ ଜାତିପାଇଁ ବଳିଦାନ ଦେବାକୁ ଗଭୀର ଭାବରେ ପ୍ରଭାବିତ କଲା । ରାଓଲାକ୍ଟ୍ ଏକ୍ଟର ବିରୋଧରେ ଦେଶବ୍ୟାପି ଯେଉଁ

ଆନ୍ଦୋଳନ ଦେଖାଗଲା ତାହା ମହତାବଙ୍କୁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ଉତ୍ସାହିତ କଲା ।

୧୯୧୭ ମସିହାରେ ପ୍ରଥମ ଶ୍ରେଣୀରେ ମ୍ୟାଟ୍ରିକ ପାସ୍ କରି ମହତାବ ରେଭେନ୍ସା କଲେଜରେ ବିଜ୍ଞାନରେ ନାମ ଲେଖାଇଲେ କିନ୍ତୁ ଏକ ବର୍ଷ ଭିତରେ ଅର୍ଥାତ୍ ୧୯୧୮ ମସିହାରେ ସେ ଉତ୍କଳ ସମ୍ମେଳନରେ ଯୋଗଦାନ ଦେଲେ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପ୍ରମୁଖ ଦାୟିତ୍ୱ ବହନ କଲେ । ସବୁଠାରୁ ମହତ୍ୱପୂର୍ଣ୍ଣ କଥା ହେଲା ଯେ ସେ କେବେ ପଦପଦବୀ ପାଇଁ ଲାଳାୟିତ ହେଉ ନ ଥିଲେ । ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେଲା ପରେ ବିଶ୍ୱନାଥ ଦାସ ପ୍ରଥମ ପ୍ରଧାନମନ୍ତ୍ରୀ ହେବାରେ ମହତାବ ବିଶେଷ ସହଯୋଗ କରିଥିଲେ । ଓଡିଶା ବିଧାନ ସଭାର ପ୍ରଥମ ବାଚସ୍ପତି ପଦ ମଧ୍ୟ ସେ ମୁକୁନ୍ଦ ପ୍ରସାଦ ଦାସଙ୍କୁ ଛାଡି ଦେଇଥିଲେ ।

ପରାଧୀନ ଭାରତରେ ହରେକୃଷ୍ଣ ମହତାବଙ୍କୁ ବାରମ୍ବାର ଦେଶକୁ ସ୍ୱାଧିନ କରିବାର ସଂଗ୍ରାମରେ କାରାବରଣ କରିବାକୁ ପଡିଥିଲା । ତେବେ ସେହି କାରାବରଣର ସମୟରେ ସେ ତାଙ୍କ ଭିତରର ଲେଖକୀୟ ପ୍ରତିଭାକୁ ବେଶ୍ ଭଲଭାବରେ ଚିହ୍ନି ପାରିଥିଲେ । ବିଶେଷ ଭାବରେ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ନିରଂଜନ ପଟ୍ଟନାୟକ ଆଦିଙ୍କ ସହ କାରାବରଣ କରିଥିବାର ସୁଯୋଗରେ ସେ ଆପଣାର ଲେଖନୀକୁ ଅଧିକ ଚଳଚଂଚଳ କରିଥିଲେ । ମଦନ ମୋହନ ମାଳବୀୟଙ୍କୁ ଭେଟି ଲକ୍ଷ୍ନୌରୁ ଫେରିଲା ପରେ ତାଙ୍କୁ କଟକ ଜେଲ୍‌ରେ ବନ୍ଦି କରାଗଲା ଯେଉଁଠି ସେ ସାଧନାର ପଥେ ନାମକ ପୁସ୍ତକ ରଚନା କରିଥିଲେ । ସେହିପରି ଭାଗଲପୁର ଜେଲ୍‌ରେ ସେ ଅଜବ ଦୁନିଆଁ ଏବଂ ଫ୍ରି ଥିଙ୍କିଙ୍ଗ ପୁସ୍ତକ ରଚନା କରିଥିଲେ । ୧୭ ଏପ୍ରିଲ୍ ୧୯୩୦ ମସିହାରେ ମହତାବଙ୍କୁ ହଜାରିବାଗ ଜେଲ୍‌କୁ ପଠାଗଲା ଯେଉଁଠି ସେ ବାଲ୍ମିକୀ ରାମାୟଣ ଓ ଭଗବତ ଗୀତାକୁ ଓଡିଆ ଭାଷାକୁ ଅନୁବାଦ କଲେ । ୧୯୩୨ ମସିହାରେ ପୁଣି ତାଙ୍କୁ ନୀଳକଣ୍ଠ, ଗୋପବନ୍ଧୁ ଓ ଆଚାର୍ଯ୍ୟ ହରିହରଙ୍କ ସହ ହଜାରିବାଗ ଜେଲକୁ ପଠାଇ ଦିଆଗଲା ଯେଉଁଠି ତାଙ୍କର ଖାନ ଅବ୍‌ଦୁଲ ଗଫର ଖାଁଙ୍କ ସହ ଜେଲ୍‌ରେ ଦେଖା ହେଲା । ତେବେ ୧୯୪୨ ମସିହାର ଅଗଷ୍ଟ କ୍ରାନ୍ତିରେ ତାଙ୍କୁ ବନ୍ଦି କରି ହାଇଦରାବାଦ ଜେଲକୁ ପଠାଇ ଦିଆଗଲା ଯେଉଁଠି ତାଙ୍କୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମାପ୍ତି ଅର୍ଥାତ୍ ୧୯୪୫ ମସିହା ପର୍ଯ୍ୟନ୍ତ ଜେଲରେ ରଖାଗଲା । ତେବେ ସେହି ରହଣି କାଳରେ ସେ ପ୍ରସିଦ୍ଧ ଓଡିଶା ଇତିହାସକୁ ରଚନା



ରାଜ୍ୟ ମିଉଜିୟମର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ସହ ଡକ୍ଟର ମହତାବ (୩୦-୧୦-୧୯୮୬)

କରିଥିଲେ ।

ଏଠାରେ ଆଉ ଏକ ବିଶେଷ କଥା ଉଲ୍ଲେଖ କରାଯାଇ ପାରେ । ୧୯୨୭ ମସିହାରେ ଯେତେବେଳେ ଓଡିଶାରେ ଭିଷଣ ବନ୍ୟା ଦେଖାଗଲା ଓ ଉତ୍କଳମଣି ଗୋପବନ୍ଧୁ ସେମାନଙ୍କ ଉଦ୍ଧାର ପାଇଁ ପ୍ରାଣ ପଣେ ଲାଗି ପଡିଲେ ସେତେବେଳେ ବିପନ୍ନ ଲୋକଙ୍କ ସାହାଯ୍ୟ ପାଇଁ ବିହାର ଓଡିଶା ଗଭର୍ଣ୍ଣର କାଉନ୍‌ସିଲ୍‌ର ସଦସ୍ୟ ପଦ ଛାଡି ଦେଇଥିଲେ ଓ ଗୋପବନ୍ଧୁଙ୍କ ସହ ମିଶି ବନ୍ୟା ବିପନ୍ନଙ୍କ ସାହାଯ୍ୟରେ ବ୍ରତୀ ହୋଇଥିଲେ । ମହତାବଙ୍କ ଏହି ମାନବୀୟ କୃତି ଗାନ୍ଧିଙ୍କୁ ବହୁତ ଭଲ ଲାଗିଥିଲା ଆଉ ସେ ୟଙ୍ଗ ଇଣ୍ଡିୟା ମୁଖପତ୍ରରେ ତାଙ୍କର ବହୁତ ପ୍ରଶଂସା କରିଥିଲେ । କରାଚି ଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇ ଓଡିଶା ଫେରିବା ପୂର୍ବରୁ ଏକ ମାସ କାଳ ସେ ସାବରମତି ଆଶ୍ରମରେ ରହିଥିଲେ ।

ସେ ଯାହା ହେଉ ଗାନ୍ଧି ଜଣେ ଅତ୍ୟନ୍ତ ଉଦାରବାଦୀ ଓ ମହାନ ନେତା ଥିଲେ । ଓଡିଶାର ଉନ୍ନତି ପାଇଁ ସେ ସବୁବେଳେ ଚିନ୍ତିତ ରହୁଥିଲେ । ଓଡିଆ ସାହିତ୍ୟ ସଂସ୍କୃତି

କଳା ଆଦିର ସେ ଜଣେ ମହାନ ପୃଷ୍ଠପୋଷକ ଥିଲେ । ସେ ପ୍ରକୃତରେ ଓଡିଶାର ନିର୍ମାତା ଥିଲେ । ୧୯୪୬ ମସିହାରୁ ୧୯୬୧ ମସିହା ପର୍ଯ୍ୟନ୍ତ ସେ ଓଡିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ ଆଉ ସେ ସମୟରେ ସେ ଆଧୁନିକ ଓଡିଶା ନିର୍ମାଣର ଯତ୍ନ ଆରମ୍ଭ କରିଥିଲେ । ୧୯୪୮ ମସିହାରେ ପଣ୍ଡିତ ନେହେରୁଙ୍କ କର କମଳରେ ସେ ରାଜଧାନୀ ଭୁବନେଶ୍ୱରର ଆଧାରଶିଳା ରଖିଥିଲେ । ତତ୍କାଳୀନ ଗୃହମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ହାତରେ ସେ କଳିଙ୍ଗ ଟ୍ୟୁବ୍ କଂପାନୀ ଆରମ୍ଭ କରି ଓଡିଶାକୁ ଶିଳ୍ପ କ୍ଷେତ୍ରରେ ଅଗ୍ରଣୀ କରିବାକୁ ପ୍ରୟାସ ଆରମ୍ଭ କରିଥିଲେ । ୧୯୫୧ ମସିହାରେ ମହତାବ ଲଣ୍ଡନଠାରେ ରାଷ୍ଟ୍ରଗୋଷ୍ଠି ସମ୍ମେଳନରେ ଭାରତର ପ୍ରତିନିଧିତ୍ୱ କରିଥିଲେ । ସେଠାରୁ ଫେରି ସେ ଓଡିଶା ବିଧାନ ସଭା,ରାଜଭବନ,ସଚିବାଳୟ ଆଦି ନିର୍ମାଣ କଲେ । ଏମିତି କି ମହତାବ ନନ୍ଦନକାନନକୁ ମଧ୍ୟ ନିର୍ମାଣ କରିଥିଲେ । ସାହିତ୍ୟ ତାଙ୍କ ଆତ୍ମାରେ ବସିଥିଲା । ଓଡିଆ ଭାଷାର ଓ ଜାତିର ବିକାଶ କେମିତି ଅଧିକରୁ ଅଧିକ ହେବ ସେ କଥା ସେ ବାରମ୍ବାର ଚିନ୍ତା କରୁଥିଲେ । ସାହିତ୍ୟ ପାଇଁ ସେ ଲେଖକଙ୍କୁ ପ୍ରେରଣା ଯୋଗାଉଥିଲେ । ରାଜନୀତିରେ କେମିତି ଭଲ ବ୍ୟକ୍ତି ଆସିବେ ସେ କଥା ମଧ୍ୟ ସେ ଚିନ୍ତା କରୁଥିଲେ । ସ୍ୱୀକାର କରାଯାଏ ଯେ ବିଜୁ ପଟ୍ଟନାୟକ, ନୀଳମଣି ରାଉତରାୟ , ଜାନକୀ ବଲ୍ଲଭ ପଟ୍ଟନାୟକ ଆଦିଙ୍କୁ ରାଜନୀତିର ପାଠ ବିଶେଷ ଭାବରେ ମହତାବହିଁ ଶିଖାଇଥିଲେ । ମହତାବ ସଂବାଦପତ୍ର ପ୍ରତିଷ୍ଠା କରିଥିଲେ । ସେଥିରେ ବହୁ ନବୀନ ଲେଖକ ଆପଣାର ପ୍ରତିଭାର ପରିଚୟ ଦେଇ ପ୍ରବୀଣ ହୋଇଥିଲେ । ଆଜିର ପିଢିର ଯେଉଁ କେତେଜଣ ବୟସ୍କ ପ୍ରତିଷ୍ଠିତ କବି, ଲେଖକ ବଂଚିଛନ୍ତି ସେମାନେ ଏ କଥା ନିଶ୍ଚୟ ସ୍ୱୀକାର କରିବେ । ଓଡିଶା ସାହିତ୍ୟ ଏକାଡେମୀ,ସଂଗୀତ ନାଟକ ଏକାଡେମୀ,ଲଳିତ କଳା ଏକାଡେମୀ, ରବିନ୍ଦ୍ର ମଣ୍ଡପ, ଭଂଜକଳା ମଣ୍ଡପ ଆଦି ଏହି ମହାନାୟକଙ୍କର କାଳାତୀତ କୃତି । ସେ ଜୀବନର ଅନ୍ତିମ କ୍ଷଣ ପର୍ଯ୍ୟନ୍ତ ଓଡିଆ ଜୀବନ ସହ ଯୋଡି ହୋଇ ରହିଥିଲେ । ସେ୧୯୬୦ ମସିହାରୁ ଗାଁ ମଜଲିସ୍ ମାଧ୍ୟମରେ ଓଡିଶାର ସାମାଜୀକ ଓ ରାଜନୈତିକ ଚେତନାକୁ ଦୀପ୍ତିମନ୍ତ କରୁଥିଲେ ।

ଡଃ ହରେକୃଷ୍ଣ ମହତାବଙ୍କୁ ଆଧୁନିକ ଉତ୍କଳର ଜଣେ ବିନ୍ଧାଣି ଅର୍ଥାତ୍ ନିର୍ମାତା କହିଲେ ଭୁଲ୍ ହେବନାହିଁ । ସେ ପ୍ରକୃତରେ ଉତ୍କଳ କେଶରୀ ନ ଥିଲେ ସେ ଥିଲେ ଆଧୁନିକ ଓ ପ୍ରଗତିଶୀଳ ଓଡିଶାର ଚକ୍ରବର୍ତ୍ତୀ । ତାଙ୍କର ଅମର କୃତି କାଳାତୀତ ହୋଇ

ଯେ ରହିଥିବ ଏ କଥା ସମସ୍ତେ ସ୍ୱୀକାର କରିବେ । ତେବେ ଏହି ମହାନ ଉତ୍କଳୀୟ ଅର୍ଥାତ୍ ଓଡିଆଙ୍କ ପାଇଁ କବିତାର ଏକ ଶ୍ରଦ୍ଧାଂଜଳି କବି ଜଣେ ଏମିତି ଦେଇ ପାରନ୍ତି-

ଉତ୍କଳ କେଶରୀ ତୁମ କାଳାତୀତ ଦୁଇ ଗୋଟି ପାଦ
ମାଟିରୁ ଛୁଇଁଛି ବୈକୁଣ୍ଠ,
ଆକାଶର ତାରାମାନେ ଏଣେତେଣେ ସାତ ସୁର ଚୌଷଠି କଳାରେ
ଦୁଇ ଆଖି ପ୍ରଲମ୍ବିତ ଦିଗ୍ ବଳୟ ଛୁଏଁ ତୁମ ହାତ,
ମଣିଷ ବସିଛି ଏଠି
ଷଠିଉଷା ପରଠାରୁ ବୁଝିନାହିଁ ମାଆ ଆଉ ମାଟିର ମୁରାଦ
ନଦୀ ନାଳ ପୁଷ୍କରଣୀ ସସାଗରା ସଂସାରର ଜାତକ ଖୋଜାରେ
ବିତିଯାଏ ଦିନ ରାତି ଦଣ୍ଡପଳ ମାସ ବର୍ଷ ଯୁଗ ପାଗ ଦିଗ
କାଳାତୀତ ଭାବ ନେଇ ସଜାଡୁଛି ପୋଥୀ ଏଠି ଏକାନ୍ତେ ଉଦ୍ଧବ ॥

ହୃଦୟଟି ବାଜପକ୍ଷୀ ନେଇ ଉଡେ ଦୂର ଦୂରାନ୍ତରେ
ଏ ଜାତି ଚାତକଟିଏ ସବୁ ସ୍ୱପ୍ନ ସାଇତିଛି ଆଖି କୋରଡରେ
ପ୍ରଜାତନ୍ତ୍ର ହନ୍ତ ସନ୍ତ ଭୁବନ ଈଶ୍ୱର ତୁମ ଭିକାରୀ ସାଜିଛି
ଉତ୍କଳୀୟ ସ୍ୱାଭିମାନ ହଜିଗଲା କେତେଦିନୁ ଯେଉଁ ଦେଶ ବସେ ଯେଉଁ ତୀରେ ॥
ତେବେ ମୁଁ ବଂଚିଛି ତୁମ ଶବ୍ଦ ଆଉ ଆତ୍ମାର ସ୍ୱାକ୍ଷର
ବାର ହାତ ଶାଢି ପିନ୍ଧି ତଥାପି ନର୍ଲଜ ଲାଗେ କୁଳବଧୂ ଦୁଲୁକୁଛି ଦାଣ୍ଡ
ଆକଣ୍ଠ ଗରଳ ପିଇ ତଥାପି ଶିଖିଛି ମନ ବଂଚିବାର ସଂଜିବନୀ ମନ୍ତ୍ର
ତୁମ ହାତ ମସ୍ତକକୁ ଛୁଇଁଦେଲେ ଲଂଘିହୁଏ ଗିରିମେରୁ କେଦାର କାନ୍ତାର ସାଗର ଆକାଶ
ଶତଜନ୍ମ ହେଉଥିବ ଏ ମାଟିରେ ଅଜର ଅମର ଆତ୍ମା ହେ ଅବିନଶ୍ୱର
ମୋ ଭିତରେ ନିରବଧୀ ଶୁଭୁଅଛି ତୁମ ଗାଁ ମଜଲିସ୍ ଏ ମାଟି ଓଁକାର ।।

**ସୌଭାଗିନୀ, ରଟିଲୋ, ରେଞ୍ଜ,ପୁରୀ**



# ବିକାଶର ପୁରୁଷ

## ମିହିର ଦାସ

ଅହମଦ ନଗର ବନ୍ଦୀଶାଳ, ପୁରାତନ ଦୁର୍ଗଟି ଜେଲ ରୂପେ ବ୍ୟବହୃତ ହେଉଥାଏ। ଏହି ଦୁର୍ଗଟି ଭାରତରେ ଅନନ୍ୟ, ମହାନ ଆକବର ଆକ୍ରମଣ କରିଥିଲେ ଅହମଦ ନଗର ଦୁର୍ଗ। ରାଜକୁମାରୀ ଚାନ୍ଦବିବି ବାରମ୍ବାର ପ୍ରତିହତ କରିଥିଲେ ସେ ଯୁଗର ଅପରାଜୟ ମୋଗଲ ବାହିନୀକୁ ବାରମ୍ବାର ବିରତ୍ୱର ସହିତ। ଅବଶ୍ୟ ବିଶ୍ୱାସ ଘାତକମାନେ ରାଜକୁମାରୀଙ୍କର ପରାଜୟକୁ ସରଳ କରିଦେଇଥିଲେ। ୧୯୪୨ ମସିହାରେ ପୁଣି ଇତିହାସ ପୃଷ୍ଠା ମଣ୍ଡନ କଲା ଅହମଦ ନଗର ବନ୍ଦୀଶାଳା। ଭାରତ ମାଟିର ସୁପୁତ୍ର ଭାରତଛାଡ଼୍ ଆନ୍ଦୋଳନର ନାୟକମାନେ ଅହମଦ ନଗର ଜେଲରେ ବନ୍ଦୀହେଲେ। ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ, ଆଚାର୍ଯ୍ୟ କ୍ରିପାଳିନୀଙ୍କ ସହିତ କାରରୁଦ୍ଧ ହେଲେ ହରେକୃଷ୍ଣ ମହତାବ। ସେଠାରେ କାରାଗାର ରୂପାନ୍ତରିତ ହୋଇଗଲା ଜାତୀୟ ବିଶ୍ୱବିଦ୍ୟାଳୟରେ। ସେହିଠାରେ ଶୃଷ୍ଟି ହେଲା ଅନେକ ଚିରନ୍ତନ ସାହିତ୍ୟ ଚିତାକର୍ଷକ ପୁସ୍ତକ। ମହତାବ ମଧ୍ୟ ଲେଖିଲେ ଓଡ଼ିଶା ଇତିହାସ ସହିତ ଆହୁରି ଅନେକ ପୁସ୍ତକ। ଥରେ ନେହେରୁ କହୁ କହୁ କହିଦେଲେ ଓଡିଶାର କିଛି ନିର୍ଦ୍ଦିଷ୍ଟ ଲିଖିତ ଇତିହାସ ନାହିଁ କେବଳ ଅଛି କିଛି ଲୋକ କଥା ଜନଶୃତି ଓ କିମ୍ବଦନ୍ତି। ଏହା ଅଡୁଆ ଅଡୁଆ ଲାଗିଲା ମହତାବଙ୍କୁ ନିଶ୍ଚୟ କଲେ ଲେଖିବାକୁ ହେବ ବୀର ଓଡିଆଙ୍କର ଇତିହାସ। ଯେଉଁ ଜାତି ଗଙ୍ଗା ଠାରୁ ଗୋଦାବରୀ ତାର ସାମ୍ରାଜ୍ୟ ବିସ୍ତାର କରିଥିଲା ତାର ବିସ୍ତୃତ ଇତିହାସ କାଗଜରେ ଛପା ହୋଇ ବହି ଆକାରରେ ପ୍ରକାଶିତ ହେବାର ଆବଶ୍ୟକତା ଅଛି। ପୂର୍ବରୁ ମଧୁସୁଦନ ରାଓ ଅନେକ କିଛି ଲେଖିଥିଲେ ମଧ ତାହା ଥିଲା ବିକ୍ଷିପ୍ତ। ଗଞ୍ଜାମ ଗାନ୍ଧୀ ନିରଞ୍ଜନ ପଟ୍ଟନାୟକଙ୍କର ଲିଖିତ 'ଖ୍ରଷର କ୍ଷୟସବ ଝକ୍ଷଙ୍ଗରଙ୍କରଭଗ୍ବ' ସଂକ୍ଷିପ୍ତ। ଏହାକୁ ଶୃଙ୍ଖଳିତ କରି ଯଥା ସମ୍ଭବ ସରଳ, ବିଶାଳ କରିବା କାର୍ଯ୍ୟରେ ଲାଗି



ବମ୍ବେର ତାଜ୍ ହୋଟେଲ୍‌ରେ ବାରବର ଶାହାଙ୍କୁ ନୈଶ୍ୟ ଭୋଜିରେ ଆପ୍ୟାୟିତ କରିବା ପରେ ଆଳାପରତ ମହତାବ ଦମ୍ପତି (୧୯୫୬)

ପଡିଲେ ଉତ୍କଳ କେଶରୀ। ଇତିହାସ ବହି ସମ୍ପୂର୍ଣ୍ଣ ହେଲା। ଆଜିବି ଏହି ପୁସ୍ତକ ପ୍ରତିଟି ଇତିହାସ ଗବେଷକ ପାଇଁ ଧ୍ରୁବତାରା ଏବଂ ବୁଦ୍ଧିଜିବୀଙ୍କର ଆବଶ୍ୟକ ବସ୍ତୁ। ଏହି ପୁସ୍ତକ ପୂର୍ଣ୍ଣାଙ୍ଗ ହୋଇ ନଥାଏ ଆରମ୍ଭ ହେଲା ଭବିଷ୍ୟତର ଚିନ୍ତା। ୧୯୪୪ ମସିହାରେ ଡଃ ଆମ୍ବେଦକର ଥାନ୍ତି କେନ୍ଦ୍ରରେ ପୂର୍ତ୍ତ ଓ ଶ୍ରମ ମନ୍ତ୍ରୀ। ପଞ୍ଜାବରେ ଦାମୋଦର ନଦୀରେ ଭାକ୍ରାନଙ୍ଗଲ ନଦୀ ବନ୍ଧ ଯୋଜନା କାର୍ଯ୍ୟ କରିବାକୁ ସେ ଘୋଷଣା କଲେ। ଓଡିଶା ପ୍ରଦେଶ ନଦୀ ବନ୍ୟାରେ ଆକ୍ରାନ୍ତ ହୋଇ ଅର୍ଥନିତୀରେ ଅତ୍ୟନ୍ତ ରୁଗଣ ଥାଏ। ବାପୁଜୀ ମଧ୍ୟ ଏହି ପ୍ରଦେଶର ଦରିଦ୍ର ଅବସ୍ଥା ଦେଖି ବିଚଳିତ ହୋଇ ଯାଇଥିଲେ। ୧୯୨୭ ମସିହାରେ ବିଶେଷ କରି ବାଲେଶ୍ୱର ଜିଲ୍ଲାରେ ବନ୍ୟାର କରାଳ ଅବସ୍ଥା ଗାନ୍ଧିଜୀଙ୍କର ପ୍ରତ୍ୟକ୍ଷ ଅନୁଭୂତି ହୋଇଥିଲା। ଉତ୍କଳମଣି ବାଲେଶ୍ୱରରେ ରହି ବନ୍ୟାକ୍ଲିଷ୍ଟଙ୍କର

ସହାୟତାର ବନ୍ଦୋବସ୍ତ କରିଥିଲେ । ମହାନଦୀ ଓଡ଼ିଶାର ଦୁଃଖର କାରଣ ହୋଇଥିଲା । ଭାକ୍ରାନଙ୍ଗଲ ବହୁମୁଖୀ ନଦୀବନ୍ଧ ସମ୍ପର୍କରେ ମହତାବ ସବିଶେଷ ବିବରଣୀ ପାଇବା ପରେ ମହତାବ କଳ୍ପନା କଲେ ମହାନଦୀରେ ଏହି ପରି ବନ୍ଧ ହୋଇପାରିଲେ ବନ୍ୟା କଷ୍ଟ ଲାଘବ ହେବ । ଜମିଜଳ ସେଚିତ ହୋଇ ଅଧିକ ଫସଲ ଉତ୍ପାଦନ ହେବ ।

ଏହା ବ୍ୟତିତ ବିଦ୍ୟୁତ ଉତ୍ପାଦନ ହେଲେ ରାଜ୍ୟ ଶିଳ୍ପ ସମୃଦ୍ଧ ହେବ । ଓଡ଼ିଶାର ଅତି ଆପଣାର ଠକରବାପାଙ୍କୁ ସେ ଖବର ଦେଲେ । ଓଡ଼ିଶାର ଦୁଃଖ ଦୂର ପାଇଁ ମହାନଦୀରେ ଭାକ୍ରାନଙ୍ଗଲ ନଦୀବନ୍ଧ ଯୋଜନା ପରି ଏକ ନଦୀ ବନ୍ଧର ଆବଶ୍ୟକତା ରହିଛି । ଓଡ଼ିଶା ବାସୀଙ୍କୁ ଦାନ ବା ରିଲିଫ୍ ଚାଉଳ ଖାଇବାରୁ ମୁକ୍ତ କରିବାକୁ ଚିନ୍ତା କରିବାକୁ ହେବ । ପୁଣି ସମୃଦ୍ଧ ହେବ ରାଜ୍ୟ ଫେରି ପାଇବ ହୃତ ଗୌରବ । ଭାରତର ଗୋଟିଏ ଅଗ୍ରଣୀ ରାଜ୍ୟ ରୂପେ ଆତ୍ମ ପ୍ରକାଶ କରିବ ଓଡ଼ିଶା । ଠକରବାପା ମହତାବଙ୍କର ଅନୁରୋଧ ଉପସ୍ଥାପନ କରିଥିଲେ ଆମ୍ବେଦକରଙ୍କର ନିକଟରେ । ପ୍ରସ୍ତାବଟି ଗୃହିତ ହୋଇଗଲା । ୧୯୪୫ ବେଳକୁ ଏହି କଥାଟି ମହତାବ ଜେଲରୁ ମୁକ୍ତି ପାଇ ଆସି ପ୍ରଥମେ ଝାରସୁଗୁଡା ଠାରେ ସାଧାରଣ ସଭାରେ ପ୍ରକାଶ କରିଥିଲେ । ୧୯୪୬ ମସିହାରେ ସେ ଓଡ଼ିଶାର ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ହୋଇ ସାରିବାପରେ ବ୍ରିଟିସ୍ ଶାସନ କାଳରେ ଶିଳାନ୍ୟାସ କରାଇଥିଲେ । ଆଜି ଯେଉଁମାନେ ହିରାକୁଦ ବନ୍ଧ ଯୋଗୁ ଅଧିକ ଲାଭବାନ ହେଉଛନ୍ତି ସେହିମାନେ ହିଁ ପ୍ରକଳ୍ପଟିର ତିବ୍ର ବିରୋଧ କରିଥିଲେ । ଏପରି ପ୍ରତିକୂଳ ପରିସ୍ଥିତି ଶୃଷ୍ଟି ହେଲା ଯେ ମହତାବଙ୍କ ମନ୍ତ୍ରୀ ମଣ୍ଡଳର ସଦସ୍ୟ ବୁଦ୍ଧରାମ ଦୁବେ ହୀରାକୁଦ ନଦୀ ବନ୍ଧ ବାତିଲ କରିବାକୁ ବାପୁଜୀଙ୍କୁ ଅନୁରୋଧ କରିଥିଲେ । ବାପୁଜୀ ବୁଦ୍ଧରାମ ଦୁବେଙ୍କୁ ହୀରାକୁଦ ବନ୍ଧର ଉପକାର ସମ୍ପର୍କରେ ବିଶଦ ଭାବେ ବୁଝାଇ ବନ୍ଧ ନିର୍ମାଣ ଉଦେଶ୍ୟରେ ତାଙ୍କର ସଦିଚ୍ଛା ଜ୍ଞାପନ କରିଥିଲେ । ସ୍ୱାଧୀନ ଭାରତରେ ପୁଣିଥରେ ପ୍ରଧାନମନ୍ତ୍ରୀ ନେହେରୁ ଙ୍କର କରକମଳରେ ଶୁଭ ଦିଆଗଲା । ଏହା ଦ୍ୱାରା କେନ୍ଦ୍ର ସରକାର ବନ୍ଧକୁ ପୂର୍ଣ୍ଣାଙ୍ଗ ନିର୍ମାଣ ପାଇଁ ପ୍ରତିଶୃତି ବଦ୍ଧ ହୋଇଗଲେ । ଅନେକ ପ୍ରତିକୂଳ ପରିସ୍ଥିତି ଦେଇ ବନ୍ଧ ନିର୍ମାଣର କାର୍ଯ୍ୟ ଆଗେଇ ଚାଲିଲା । ୧୯୫୦ ମସିହାରେ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ ନବକୃଷ୍ଣ ଚୌଧୁରୀ । ମହତାବ ହେଲେ କେନ୍ଦ୍ର ଶିଳ୍ପ ମନ୍ତ୍ରୀ । ଜମିଦାରୀ ଉଚ୍ଛେଦ ଏବଂ ଜମିଜମା ସଂସ୍କାରର ଅତ୍ୟଧିକ କାର୍ଯ୍ୟଭାରରେ ରାଜ୍ୟ ସରକାର ବ୍ୟସ୍ତରହି ହୀରାକୁଦର କାର୍ଯ୍ୟ ମନ୍ଥର ଗତିରେ ଚାଲିଲା ୧୯୫୬ ମସିହାରେ ପୁଣି ମହତାବ ମୁଖ୍ୟମନ୍ତ୍ରୀ ହୋଇ ଓଡ଼ିଶା ଫେରିଲେ । କ୍ଷିପ୍ରଗତିରେ ଆଗେଇଲା ନଦୀବନ୍ଧ କାର୍ଯ୍ୟ । ପୁଣି ବୈଷୟୀକ ସମସ୍ୟା ଦେଖାଗଲା । ଏସିଆର ସର୍ବ ବୃହତ ମାଟି ବନ୍ଧ ଥାଏ

ପ୍ରକଳ୍ପର ଏକ ଅଂଶ ବିଶେଷ। ଏହାକୁ ପୁର୍ଣ୍ଣାଙ୍ଗ କରିବାକୁ ସେ ବେଳର ଯନ୍ତପାତି ଅକ୍ଷମ ଜଣାଗଲା। ଠିକାଦାର, ଯନ୍ତ୍ରୀ, ବୈଜ୍ଞାନିକମାନେ ଚିନ୍ତାରେ ପଡିଗଲେ। ପରିଶେଷରେ ଭାରବାହୀ ଗଧମାନଙ୍କ ସହାୟତାରେ ମାଟି ଯଥା ସ୍ଥାନରେ ପକାଇ କାର୍ଯ୍ୟ ପୁରଣ କରାଗଲା। ଠିକାଦାରମାନେ ସ୍ୱିକାର କରିଛନ୍ତି ନିଜେ ମହତାବ ଏହି କୌଶଳଟିର ପରାମର୍ଶ ଦେଇ ଥିଲେ। ମହାନଦୀର ହିରାକୁଦ ବନ୍ଧକୁ ୧୯୫୮ ପ୍ରଧାନ ମନ୍ତ୍ରୀ ନେହେରୁ ଏହାକୁ ଦେଶ ଉଦ୍ଦେଶ୍ୟରେ ଲୋକାର୍ପଣ କରିଥିଲେ। ଓଡିଶାର ସମୃଦ୍ଧିରେ ହିରାକୁଦ ବହୁମୁଖୀ ନଦୀବନ୍ଧ ବର୍ଷ ବର୍ଷ ଧରି ଯୋଗ ଦାନ କରି ଚାଲିଛି ।

ଓଡିଶା ଲୋକ ସବୁଠି ଗାଇ ଉଠନ୍ତି "ହରି ମହତା ଉଡେଇଲେ ଗାନ୍ଧୀ ଛତା" ଠିକ୍ ଯେପରି ଉତ୍କଳ ଗୌରବଙ୍କ ପାଇଁ ସ୍ମରଣିକା ଅଛି। 'ପାଠ ପଢିବ, କାଳିଆ ଘୋଡ଼ାରେ ଚଢିବି, ମଧୁବାବୁ ସଙ୍ଗେ ଲଢିବି,' ଓଡିଶାକୁ ରାଜ୍ୟ ଗଠନ କରିଥିଲେ ମଧୁବାବୁ। ଏଠି ବଞ୍ଚିବାର ବାଟ ତିଆରିକଲେ ହରେକୃଷ୍ଣ ମହତାବ ।

ରାଜପାଟ ତ୍ୟାଗ କରି ସେ ମଣିଷ ତିଆରି କାରଖାନା କରିଚନ୍ତି। ଗଣତନ୍ତ୍ର ପ୍ରତିଷ୍ଠା କରିଛନ୍ତି। ଉତ୍କଳ ସମ୍ମିଳନୀରେ କାର୍ଯ୍ୟ କରିଛନ୍ତି। ରାଜ୍ୟ ବିଛିନାଞ୍ଚଳକୁ ଏକାଠି କରିବାକୁ ପରିଶ୍ରମ କରିଛନ୍ତି। ସ୍ୱାଧିନତା ପାଇଁ କାରାବରଣ କରି ଅତ୍ୟାଚାର ଭୋଗିଛନ୍ତି। ସାହିତ୍ୟ ଶୃଷ୍ଟି କରିଛନ୍ତି ସାହିତିକ ଶୃଷ୍ଟି କରିଛନ୍ତି। ସହିତ୍ୟର ମନ୍ଦିର ତିଆରି କରିଛନ୍ତି। ଗାନ୍ଧୀ ଦର୍ଶନ ଗ୍ରହଣ କରିଛନ୍ତି। ସଂପତି ହରାଇ ଗାନ୍ଧୀ ଆଦର୍ଶର ପ୍ରଚାର କରିଛନ୍ତି। ରାଜ୍ୟକୁ ସମୃଦ୍ଧି କରିଛନ୍ତି। ଅଧିକାଂଶ ନିର୍ମାଣ ତାଙ୍କ ସାଧନାର ଫଳ। ୧୯୭୫ ମସିହାରେ ପରିଣତ ବୟସରେ ରୁଗଣ ସ୍ୱାସ୍ଥ୍ୟରେ ନାଗରିକର ମୌଳିକ ଅଧିକାର ପାଇଁ ସଂଗ୍ରାମକୁ ଓହ୍ଲେଇଛନ୍ତି। କାରବରଣ କରିଛନ୍ତି, ଶରୀର ଅଧିକ ଅସୁସ୍ଥ ହେଇଛନ୍ତି। ତଥାପି ସେ ଆଦର୍ଶର ପଥରୁ ବିଚ୍ୟୁତ ହୋଇ ନାହାଁନ୍ତି। ଗୋରାଚାନ୍ଦ ମିଶ୍ରଙ୍କୁ ପ୍ରଜାତନ୍ତ୍ରରେ ଯୋଗ ଦେବାପାଇଁ କହିଥିଲେ। ଗୋରାଚାନ୍ଦ ମିଶ୍ର କହିଲେ "ମୁଁ ଆପଣଙ୍କ ରାଜନୈତିକ ବିରୋଧି ଅଟେ"। "ମହତାବ କହିଥିଲେ ମୋ ବିରୁଦ୍ଧରେ ଲେଖ କିନ୍ତୁ ପ୍ରଜାତନ୍ତ୍ରରେ ଲେଖ" ଏକଥା କହିବାବେଳେ ଗୋରାଚନ୍ଦ ମିଶ୍ର ଅନେକ ବର୍ଷ ପରେ ମହତାବଙ୍କ ଆବର୍ତ୍ତମାନରେ କାନ୍ଦିପକାଇ ଥିଲେ। ଅଶି ଦଶକରେ ଗୋଟିଏ ସାକ୍ଷାତକାରରେ ପ୍ରକାଶ କରିଥିଲେ ବଲ୍ୟକାଳରୁ ତାଙ୍କର ଆତ୍ମାର ଡାକ ଥିଲା ସାହିତିକଟିଏ ଦେବାପାଇଁ। ଲୋକ ତାଙ୍କୁ କହିଲେ ଉତ୍କଳ କେଶରୀ, ଅନେକ କୁହନ୍ତି ସେ ପୁନ୍ନ ଜନ୍ମରେ ଯଯାତୀ କେଶରୀ। ସେ ଯାହା ହେଉ ସେ ହେଉଛନ୍ତି ଓଡିଶାର ବିକାଶ ପୁରୁଷ ।



# ମୃତ୍ୟୁଞ୍ଜୟୀ ହରେକୃଷ୍ଣ ମହତାବ

## ହିମାଂଶୁ ଶେଖର ଆଚାର୍ଯ୍ୟ

ବିରଳ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ। ମୁକ୍ତି ସଂଗ୍ରାମ ଆନ୍ଦୋଳନର ରଣାଙ୍ଗନରେ ଜଣେ ମତ୍ତଗଜ ସମ ସଂଗ୍ରାମୀ, ରାଷ୍ଟ୍ରଗଠନରେ ଅନନ୍ୟ ବିନ୍ଧାଣି ଓ ସାହିତ୍ୟ ସାଧନାରେ ଜଣେ ସମର୍ପିତ ପ୍ରାଣଭାବେ ତାଙ୍କର ନିଆରା ପରିଚୟ ଥିଲା। ଏକାଧାରରେ ସେ ଜଣେ ମହାନ୍ ସ୍ୱାଧୀନତା ସଂଗ୍ରାମୀ. ଜନନାୟକ, ସାମ୍ବାଦିକ, ଐତିହାସିକ ଓ ସାରସ୍ୱତ ସାଧକ ଥିଲେ। ଏକ ସଙ୍ଗରେ ଏତେ ସୁଗୁଣ ଓ ସୁପୌରୁଷର ସମାବେଶ ଜଣେ ବ୍ୟକ୍ତି ପାଖରେ ଦେଖାଯିବା ଏକ ଅସାଧାରଣ କଥା- ସେଥିପାଇଁ ସେ ବିରଳ ବ୍ୟକ୍ତିତ୍ୱ। ତାଙ୍କର କର୍ମମୟ ଓ ଘଟଣାବହୁଳ ଜୀବନ ଭିତରେ ସମାଜର ପ୍ରତ୍ୟେକ କ୍ଷେତ୍ରରେ ସେ ନିଜର କୀର୍ତ୍ତୀ ଓ କୃତିର ଯେଉଁ ସ୍ୱାକ୍ଷର ଛାଡିଯାଇଛନ୍ତି ତାହା ଏବେବି ଅନତିକ୍ରମଣୀୟ ହୋଇ ରହିଛି ।

୧୮୯୯ ମସିହା ନଭେମ୍ବର ୨୧ ତାରିଖରେ ହରେକୃଷ୍ଣ ମହତାବଙ୍କ ଜନ୍ମ । ସେ ଅଗରପଡା ରାଜ ଜେମାଙ୍କ ସୁପୁତ୍ରଭାବରେ ଅତି ଅଳ୍ପ ବୟସରୁ ତତ୍‌କାଳୀନ ରାଜା ବା ଜମିଦାର ଜଗନ୍ନାଥ ମହତାବଙ୍କ ଉତ୍ତରାଧିକାରୀ ହୋଇଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ବାଲ୍ୟ କାଳରୁ ତାଙ୍କ ବହୁମୁଖୀ ପ୍ରତିଭାର ଉନ୍ମେଷ ହୋଇଥିଲା ।ଓଡିଶାର ରାଜନୀତି, ଶିକ୍ଷା, ସାହିତ୍ୟ, ସମାଜସେବା ଓ ସାମ୍ବାଦିକତା- ସମସ୍ତ କ୍ଷେତ୍ରରେ ସେ ନିଜର ପଦାଙ୍କ ଛାଡି ଯାଇଛନ୍ତି । ଓଡିଶାର ପୂର୍ଣ୍ଣାଙ୍ଗ ଇତିହାସ ରଚନା କରି ସେ ହୋଇଯାଇଛନ୍ତି ଯୁଗପୁରୁଷ । ଖାଲି ସେତିକି ନୁହେଁ, ଥରେ ସିଏ ଯାହା ଚିନ୍ତା କରୁଥିଲେ ତାକୁ କାର୍ଯ୍ୟରେ କରି ଦେଖାଉଥିଲେ । ଏଥିରୁ ତାଙ୍କୁ କେହି ବିଚ୍ୟୁତ କରିପାରୁନଥିଲେ । ଏପରିକି ତାଙ୍କ



ବମ୍ବେ ରାଜ୍ୟପାଳ ଭାବେ ଶପଥ ଗ୍ରହଣ କରୁଛନ୍ତି ଡକ୍ଟର ମହତାବ । ଶପଥ ପାଠ କରାଉଛନ୍ତି ବମ୍ବେ ହାଇକୋର୍ଟର ତତ୍କାଳୀନ ମୁଖ୍ୟ ବିଚାରପତି ଏସ୍.ସି.ଚଗଲା

ବ୍ୟତିରେକ ଓଡିଶା ରାଜନୀତିର କୌଣସି ସଂଜ୍ଞା, ସ୍ଥିତି ନାହିଁ । ସମସ୍ତ ଉଲ୍ଲେଖଯୋଗ୍ୟ ରାଜନୀତିକ ଉତ୍ଥାନ-ପତନରେ ତାଙ୍କର ହାତଥିବା ଅନେକ ବିଶ୍ୱାସ କରୁଥିଲେ । ସତରେ ସେ ଥିଲେ ଏକ ରାଜନୀତିକ ବିସ୍ମୟ, ଯାହାଙ୍କ ଚିନ୍ତାରେ, କଥାରେ, ଲେଖାରେ ଓ କାର୍ଯ୍ୟରେ ଗୋଟିଏ ଜାତିର ଶ୍ୱାସ-ପ୍ରଶ୍ୱାସ ଏମିତି ସ୍ପନ୍ଦିତ ହେଉଥିଲା । ସେ ଖାଲି ଜଣେ ବ୍ୟକ୍ତି ବିଶେଷ ନଥିଲେ, ଥିଲେ ଏକ ସ୍ୱୟଂସଂପୂର୍ଣ୍ଣ ଅନୁଷ୍ଠାନ ।

ଡକ୍ଟର ମହତାବଙ୍କ କର୍ମମୟ,ସଂଗ୍ରାମୀ ଓ ରାଜନୈତିକ ଜୀବନ ବେଶ୍ ଚଳଚଞ୍ଚଳ ଥିଲା । ନିଜର ଅସାଧାରଣ ବ୍ୟକ୍ତିତ୍ୱ ଓ ପରାକାଷ୍ଠା ଯୋଗୁ ପ୍ରାୟ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟଧରି ୧୯୨୪ ମସିହାରୁ ୧୯୭୪ ମସିହା ପର୍ଯ୍ୟନ୍ତ ଓଡିଶା ତଥା ଜାତୀୟ

ରାଜନୀତିକୁ ପ୍ରଭାବିତ କରିଥିଲେ । ୧୯୩୭ ମସିହାରେ ରାଜ୍ୟ କଂଗ୍ରେସର ସଭାପତି ଭାବେ ସଂଗଠନରେ ପାଦ ଥାପିଥିଲେ ସେ । ପରେ ୧୯୩୮ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସମିତି ସଭ୍ୟରୂପେ ତାଙ୍କୁ ମନୋନୀତ କରାଯାଇଥିଲା । ଏହି ସମୟରେ ନିଜର ଅପୂର୍ବ ସାଂଗଠନିକ ଦକ୍ଷତାର ପ୍ରମାଣ ଦେଇଥିଲେ । ପ୍ରଥମ ପର୍ଯ୍ୟାୟରେ ୧୯୪୬ରୁ ୧୯୫୦ମସିହା ପର୍ଯ୍ୟନ୍ତ ସେ ଓଡିଶାର ପ୍ରଧାନମନ୍ତ୍ରୀ ପରେ ମୁଖ୍ୟମନ୍ତ୍ରୀ ହେବାର ଗୌରବ ଲାଭ କରିବା ସହ ପରବର୍ତ୍ତୀ ପର୍ଯ୍ୟାୟରେ ୧୯୫୬ ମସିହାରେ ଦ୍ୱିତୀୟ ଥର ପାଇଁ ଓଡିଶାର ମୁଖ୍ୟମନ୍ତ୍ରୀ ପଦ ମଣ୍ଡନ କରି ୧୯୬୧ ମସିହା ପର୍ଯ୍ୟନ୍ତ ସେଥିରେ ଅବସ୍ଥାପିତ ହୋଇଥିଲେ । ସେହିପରି ୧୯୫୦ ମସିହାରୁ ୧୯୫୨ ମସିହା ପର୍ଯ୍ୟନ୍ତ କେନ୍ଦ୍ର ଶିଳ୍ପ, ବାଣିଜ୍ୟ ଓ ଯୋଗାଣ ମନ୍ତ୍ରୀ ରୂପେ ନିଜ ଦାୟିତ୍ୱ ସୂଚାରୁରୂପେ ତୁଲାଇଥିଲେ । ୧୯୫୫-୧୯୫୬ ମସିହାରେ ବମ୍ବେ ରାଜ୍ୟର ରାଜ୍ୟପାଳ ହେବାର ସୌଭାଗ୍ୟ ଡକ୍ଟର ମହତାବ ହିଁ ଲାଭ କରିଥିଲେ । ୧୯୬୨ ମସିହାରେ ଯେଉଁ ତିନିଜଣ ସଦସ୍ୟ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ତନ୍ମଧ୍ୟରୁ ମହତାବ ଥିଲେ ଜଣେ । ସେହିପରି ୧୯୬୬ ମସିହାରେ କଂଗ୍ରେସ ଦଳ ତ୍ୟାଗ ପରେ ୧୯୬୭,୧୯୭୧ ଓ ୧୯୭୪ ମସିହାରେ ସେ ମଧ୍ୟ ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ମହତାବଙ୍କ ଶାସନକାଳ ଓଡିଶା ପାଇଁ ଏକ ସୁବର୍ଣ୍ଣଯୁଗ ଥିଲା କହିଲେ ଭୁଲ୍ ହେବ ନାହିଁ । ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ସ୍ୱକୀୟତା, ସାହସ ଓ ନିର୍ଭୀକତା ପରିସ୍ଫୁଟ ହୋଇଥିଲା । ଆଧୁନିକ ଓଡିଶାର ନିର୍ମାତା ଭାବେ ଗଡଜାତ ମିଶ୍ରଣ, ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠା, ଓଡିଶା ଟେକ୍ସଟାଇଲ୍ ମିଲ୍ ,କଟକ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠାରେ ତାଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ଆଜି ବି ଉଚ୍ଚ ପ୍ରଶଂସିତ । କେବଳ ମହତାବ ହିଁ ଗଡଜାତ ମିଶ୍ରଣ କରାଇ ଆଜିର ଓଡିଶା ଠିଆ କରାଇଛନ୍ତି । ତେଣୁ ତାଙ୍କୁ ଓଡିଶାର ବିସମାର୍କ କୁହାଯାଏ । ବିଶେଷ କରି କୃଷି ଓ କୃଷକଙ୍କ ଉନ୍ନତି ପାଇଁ ମହତାବଙ୍କ ସର୍ବଶ୍ରେଷ୍ଠ ଅବଦାନ ହେଉଛି ହୀରାକୁଦ ବନ୍ଧ । ୧୯୪୮ ମସିହା ଏପ୍ରିଲ ୧୨ ତାରିଖରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଏହାର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ଓଡିଶାରେ ହାଇକୋର୍ଟ ପ୍ରତିଷ୍ଠା ଦିଗରେ ମହତାବ ଆଶୁ ପଦକ୍ଷେପ ନେଲେ । ସୁପ୍ରିମକୋର୍ଟର ସେତେବେଳର ପ୍ରଧାନ ବିଚାରପତିଙ୍କ ଦ୍ୱାରା ଏହା ଉଦ୍‌ଘାଟିତ ହୋଇଥିଲା । ଓଡିଶାରେ

ଖେଳ କସରତକୁ ପ୍ରୋତ୍ସାହନ ଦେବାପାଇଁ ମହତାବଙ୍କ ଅବଦାନ ବହୁତ ବେଶୀ । ଓଡିଶା ଅଲମ୍ପିକ ଆସୋସିଏସନ୍ ତାଙ୍କ ଉଦ୍ୟମରେ ଗଠିତ ହୋଇଥିଲା । ସେ ଶେଷ ପର୍ଯ୍ୟନ୍ତ ତାର ସଭାପତି ଥିଲେ । ବାରବାଟୀ ଷ୍ଟାଡିୟମ୍ ନିର୍ମାଣରେ ସେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ।

ରାଜନୀତି ଓ ସାହିତ୍ୟ ସାଧନା ସହିତ ମହତାବ ସାମ୍ବାଦିକତାକୁ ନିଜ ଜୀବନର ଅଙ୍ଗ ବୋଲି ଭାବିନେଇଥିଲେ । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ସଫଳତା ସାର୍ଥକ ଜନ୍‌ମତ ଉପରେ ନିର୍ଭର କରେ ବୋଲି ସେ ମର୍ମେ ମର୍ମେ ଅନୁଭବ କରିଥିଲେ । ଜନମତକୁ ପ୍ରତିଫଳିତ କରିବା ପାଇଁ ସେ ପ୍ରତିଷ୍ଠା କରିଥିଲେ "ପ୍ରଜାତନ୍ତ୍ର" । ୧୯୨୩ ମସିହାରେ ଏହା ପ୍ରଥମେ ସାପ୍ତାହିକ ଭାବେ ପ୍ରକାଶ ପାଇବା ପରେ ୧୯୪୭ ମସିହାଠାରୁ ଏହା ଦୈନିକ ପ୍ରକାଶ ପାଇଆସୁଅଛି । ପ୍ରଜାତନ୍ତ୍ରର ବହୁ ବିଭାଗ ଦେଖିବାକୁ ମିଳେ । ଏହାର ଆଉ ଏକ ଆକର୍ଷଣୀୟ ବିଭାଗ ଥିଲା ଗାଁ -ମଜଲିସ୍ । ଏହାକୁ ମହତାବ ନିଜେ ଲେଖୁଥିଲେ । ପ୍ରଜାତନ୍ତ୍ରର ଗାଁ-ମଜଲିସ ସ୍ତମ୍ଭ ଯେଭଳି ପ୍ରଭାବଶାଳୀ ଥିଲା ସେଭଳି ସାମର୍ଥ୍ୟ ଭରା ସ୍ତମ୍ଭ ଏ ଯାଏ ଅନ୍ୟ କୌଣସି ସମ୍ବାଦ ପତ୍ରରେ ସମ୍ଭବ ହୋଇପାରିନାହିଁ । ଏଥିରେ ଦୁଃଖୀ, ଦରିଦ୍ର, ଶୋଷିତ ଜନସାଧାରଣଙ୍କ ପାଇଁ ସମବେଦନାର ଉଚ୍ଛ୍ୱାସ ଦେଖିବାକୁ ମିଳୁଥିଲା । ଏତଦ୍‌ବ୍ୟତୀତ ଶିଶୁପତ୍ରିକା ମୀନାବଜାର ଓ ଝଙ୍କାରର ସେ ସ୍ରଷ୍ଟା ଥିଲେ । ପ୍ରଜାତନ୍ତ୍ର ପ୍ରଚାର ସମିତିର ସଭାପତି ଥାଇ ସେ ସାରସ୍ୱତ ବିଷୁବ ମିଳନର ପରିକଳ୍ପନା କରିଥିଲେ । ପ୍ରତିବର୍ଷ ଏହି ଉତ୍ସବରେ କବି, ଲେଖକ ଓ ସାହିତ୍ୟିକମାନେ ସମ୍ବର୍ଦ୍ଧିତ ହେଉଛନ୍ତି ।ଏବେ ମଧ୍ୟ ବିଷୁବ ମିଳନ ସମାରୋହରେ ତାଙ୍କ ଶୂନ୍ୟତା ବେଶ୍ ବାରିହୋଇପଡେ ।

ମହତାବଙ୍କର ସାହିତ୍ୟ କ୍ଷେତ୍ରରେ ମଧ୍ୟ ଗଭୀର ପ୍ରବେଶ ଓ ଅନୁରାଗ ଥିଲା । ସେ ଥିଲେ ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ । ବହୁ ସମସ୍ୟାର ସମ୍ମୁଖୀନ ହୋଇଥିଲେ ମଧ୍ୟ ଲେଖନୀ ଚାଳନାରୁ ସେ ବିରତ ହୋଇନଥିଲେ । ତାଙ୍କର ପ୍ରବନ୍ଧଗୁଡିକ ଯେପରି ଭାବୋଦ୍ଦୀପକ, ତାଙ୍କ ଉପନ୍ୟାସଗୁଡିକ ସେପରି ପ୍ରାଣବନ୍ତ ଥିଲା । ଏଥିସହିତ ଗଳ୍ପ, ଏକାଙ୍କିକା ଓ କାବ୍ୟ କବିତା ଲେଖିବାରେ ସେ ମାହିର ଥିଲେ । ତାଙ୍କର ପ୍ରକାଶିତ ଉପନ୍ୟାସ ଗୁଡିକ ହେଲା ପ୍ରତିଭା, ଅବ୍ୟାପାର, ନୂତନ ଧର୍ମ, ଟାଉଟର, ତୃତୀୟ ପର୍ବ ଓ ୧୯୭୫ । ପ୍ରବନ୍ଧଗୁଡିକ ଭିତରେ ରହିଛି ସମାଜ ଉପରେ ସାହିତ୍ୟର ପ୍ରଭାବ, ହଜାରେ

ବର୍ଷରେ ଓଡ଼ିଆ ସାହିତ୍ୟ, ଭାରତୀୟ ସଂସ୍କୃତିକୁ ଓଡ଼ିଶାର ଅବଦାନ, ଗୀତା ଓ ଜନତା ଓ ସାହିତ୍ୟ ଓ ରାଜନୀତି । ଓଡିଶାରେ ଏବେ ଅନେକ ଆତ୍ମ ଜୀବନୀ ଦେଖିବାକୁ ମିଳେ କିନ୍ତୁ ଫକୀର ମୋହନଙ୍କ ଆତ୍ମ ଜୀବନୀ ପରେ ସର୍ବୋତ୍ତମ ଆତ୍ମଜୀବନୀ 'ସାଧନାର ପଥେ' । ଏହା ଯେଭଳି ସରଳ,ସାବଲୀଳ ଓ ସ୍ୱଚ୍ଛନ୍ଦରେ ପ୍ରଭହିତ ଏକ ଆତ୍ମକଥା । ବିଶେଷକରି ତାଙ୍କ ରଚିତ 'ଓଡିଶା ଇତିହାସ' ଏକ ଅନନ୍ୟ ସୃଷ୍ଟି ଯାହା ଭବିଷ୍ୟତ ଗବେଷକମାନଙ୍କୁ ଯୁଗଯୁଗ ଧରି ପ୍ରେରଣା ଦେଇଆସୁଥିବ । ଐତିହାସିକ ମଜୁମ୍‌ଦାରଙ୍କ ଭାଷାରେ ଓଡିଆ ଭାଷାରେ ଆଧୁନିକ ବୈଜ୍ଞାନିକ ପଦ୍ଧତିରେ ଯେଉଁ କେତୋଟି ପୂର୍ଣ୍ଣାଙ୍ଗ ଇତିହାସ ରଚିତ ହୋଇଛି, ତନ୍ମଧ୍ୟରୁ 'ଓଡିଶା ଇତିହାସ' ଶ୍ରେଷ୍ଠ ଗ୍ରନ୍ଥ । ଏଥିପାଇଁ ୧୯୫୦ ମସିହାରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ, ୧୯୫୬ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୫୮ ମସିହାରେ ସାଗର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନଜନକ ଡି.ଲିଟ୍. ଉପାଧିରେ ଭୂଷିତ କରିଥିଲେ ।

ଡକ୍ଟର ହରେକୃଷ୍ଣ ମହତାବ ଆଜି ଆମ ଗହଣରେ ନାହାଁନ୍ତି ସତ, ହେଲେ ଓଡିଶାର ପ୍ରତିଟି କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ପାଇଁ ଜନମାନସରେ ସେ ଚିରଦିନ ସ୍ମରଣୀୟ ହୋଇରହିବେ । ସମୟର ସ୍ତର ସ୍ତର ପାଉଁଶ ତଳେ ତାଙ୍କ ସ୍ମୃତି ହଜିବାକୁ ଆହୁରି ଅନେକ ଦିନ ଲାଗିବ । ସେ ଏକ କାଳୋତ୍ତୀର୍ଣ୍ଣ ପ୍ରତିଭା- ଏକ ଅଲିଭା ବତୀଘର । କୁନ୍ତଳା କୁମାରୀଙ୍କ ଭାଷାରେ-

ଶୁଣହେ ମଣିଷ ଭାଇ !<br>
ଅମୃତ ଦୀପ୍ତି ସନ୍ତାନ ତୁମେ<br>
ମରଣ ତୁମର କାହିଁ ?

ଏବେ ଚିନ୍ତା କରିବାର ସମୟ ଆସିଛି । ସେହି ଚିରବନ୍ଦନୀୟ, ମହାନ୍ ସଂଗ୍ରାମୀ ତଥା ଅନନ୍ୟ ଜନନାୟକଙ୍କ ଅଧୁରା ସ୍ୱପ୍ନକୁ ସାକାର କରିବାପାଇଁ ସବୁ ସ୍ତରରେ ଉଦ୍ୟମ ହେଉ ଏହାହିଁ ତାଙ୍କ ୧୧୬ତମ ଜୟନ୍ତୀ ପାଳନ ଅବସରରେ କାମନା ।

ସଭାପତି ସାରସ୍ୱତ ପରିଷଦ, ଜଗତସିଂହପୁର



# ମଣିଷ ଭିତରେ ମଣିଷ ଜଣେ

## ଅଧ୍ୟାପକ ଲକ୍ଷ୍ମୀନାରାୟଣ ଦାଶ

ଉତ୍କଳକେଶରୀ ଡ଼. ହରେକୃଷ୍ଣ ମହତାବଙ୍କ ଭଳି ଉତ୍ତୁଙ୍ଗ ବ୍ୟକ୍ତିତ୍ୱଙ୍କର ଯଶଗାନ ଓଡ଼ିଶାର ଆବାଳ ବୃଦ୍ଧ ବନିତା ଶତାବ୍ଦି ଶତାବ୍ଦି ଧରି ନିଃଚିତ ଭାବରେ କରିଚାଲିଥିବେ ଏଥିରେ ସନ୍ଦେହ ନାହିଁ । ଏହାର ସ୍ୱାଭାବିକ କାରଣ ଡ଼.ମହତାବ ତାଙ୍କର ଜୀବନ କାଳ ମଧ୍ୟରେ ପ୍ରତ୍ୟେକ ଲୋକଙ୍କୁ ନିଜର ବୋଲି ଭାବୁଥିଲେ । ତାଙ୍କର ଗୋଟିଏ ନୀତି ଥିଲା 'ଯିଏ ଯେଉଁଠି ଥାଉ ସଭିଏଁ ମୋର ନିଜର' ସମସ୍ତେ ମୋର ଆପଣାର । ଓଡ଼ିଶାର ଉନ୍ନତି କ୍ଷେତ୍ରରେ ତାଙ୍କର ଅବଦାନ ଆଜିପର୍ଯ୍ୟନ୍ତ ଏବଂ ଭବିଷ୍ୟତ ପିଢ଼ି ପର୍ଯ୍ୟନ୍ତ ନିଶ୍ଚିତ ଭାବରେ ସ୍ମରଣୀୟ । ସ୍ୱାଧୀନତା ସଂଗ୍ରାମ ସମୟରେ ଏବଂ ପରବର୍ତ୍ତି ସମୟରେ ଓଡ଼ିଶାର ସର୍ବାଙ୍ଗିନ ଉନ୍ନତି ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ଓଡ଼ିଶା ଗଠନ ସମୟରେ ଉତ୍କୃଷ୍ଟ ପ୍ରତିଭା ଚୟନ କରିବାରେ ସେ କେବେ ଭୁଲ କରିନାହାଁନ୍ତି । ସାହିତ୍ୟ, ସଂସ୍କୃତି, ସମାଜସେବା, ରାଜନୀତି ଏବଂ ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ପ୍ରତିଷ୍ଠା ସମସ୍ତେ ସ୍ୱୀକାର କରୁଥିଲେ । କିନ୍ତୁ ସେ ନିଜକୁ ଭାବୁଥିଲେ ଜଣେ ସାଧାରଣ କର୍ମୀଟିଏ । ଜୀବନକାଳରେ ଏବଂ ପରେ ମଧ୍ୟ ତାଙ୍କର କଥା ଏବଂ ଗାଥା ସବୁ ସମୟରେ ପ୍ରାସଙ୍ଗିକ ଏବଂ ଯୁକ୍ତିସଙ୍ଗତ । ସେ ଯାହା ଚାହୁଁଥିଲେ ତାହା ସମ୍ଭବ କରିପାରୁଥିଲେ । ଏହାର ଏକମାତ୍ର କାରଣ ସେ ସମସ୍ତଙ୍କୁ ବିଶ୍ୱାସ (TRUST) କୁ ନେଉଥିଲେ । କାହାର କେତେ ଦକ୍ଷତା, କିଏ କେଉଁ କାର୍ଯ୍ୟକରିପାରିବ ତାହାକୁ ସେ ଭଲଭାବେ ଅନୁଧ୍ୟାନ କରୁଥିଲେ । ନହେଲେ ସ୍ୱାଧୀନତା ପରବର୍ତ୍ତି ସମୟରେ ଅନୁନ୍ନତ ଓଡ଼ିଶା ଏତେ କମ୍ ସମୟ ମଧ୍ୟରେ ସୁସଂହତ ଏବଂ ସମୃଦ୍ଧ ହୋଇପାରି ନଥାନ୍ତା । ସେ ରାଜନୀତି ମଧ୍ୟରେ ଦେଶସେବାକୁ ଅଗ୍ରାଧିକାର ଦେଉଥିଲେ । ଏଥିରେ ତିଳେମାତ୍ର ବ୍ୟକ୍ତିଗତ ସ୍ୱାର୍ଥ ନଥିଲା । ମହତ୍କାର୍ଯ୍ୟ ପାଇଁ ଯାହା



ବମ୍ବେ ରାଜଭବନରେ ପ୍ରାତଃଭୋଜନ କାଳରେ ନେହରୁ ଓ ମହତାବ

କିଛି କରାଯାଇପାରିବ ତାହା କରିବାପାଇଁ ସେ ଉଚିତ୍ ମଣୁଥିଲେ । ଦେଶ ସେବା ମଧ୍ୟରେ ପୁରି ରହିଥିଲା ସମାଜର ଉନ୍ନତି ଜାତିର ଉନ୍ନତି । ସ୍ୱତନ୍ତ୍ର ଓଡ଼ିଶା ଗଠନ ହୋଇଥିଲେ ମଧ୍ୟ ତାହାର ପୂର୍ଣ୍ଣାଙ୍ଗ ଏବଂ ବିକଶିତ ରୂପ ଦେଖିବାକୁ ତାଙ୍କର ଐକାନ୍ତିକ ଲକ୍ଷ ଏବଂ ଉଦ୍ଦେଶ୍ୟ ଥିଲା । ସେହି ଲକ୍ଷ୍ୟକୁ ସାକାର କରିବା ଲକ୍ଷ୍ୟରେ ଆଗରେ ଯେତେ ବାଧାବନ୍ଧନ ଆସୁପଛକେ ତାହାକୁ ତିଳେ ମାତ୍ର ଭୃକ୍ଷେପ କରିନଥିଲେ । ସମୃଦ୍ଧ ବା ପୂର୍ଣ୍ଣାଙ୍ଗ ଓଡ଼ିଶା ରାଜ୍ୟଗଠନ ଲକ୍ଷନେଇ ଆରମ୍ଭ କରିଥିଲେ ଗଡ଼ଜାତ ମିଶ୍ରଣ । ଗଡ଼ଜାତ ମିଶ୍ରଣର ମହାନାୟକ ମହତାବ ଓ ତତ୍କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର ଅବଦାନ ଓଡ଼ିଶା ବାସୀଙ୍କ ପାଇଁ ସବୁସମୟରେ ସ୍ମରଣୀୟ ହୋଇ ରହିଥିବ । ଏଠାରେ ଗୋଟିଏ ପ୍ରସଙ୍ଗ ଉଲ୍ଲେଖ କରାଯିବା ସ୍ୱଭାବିକ । ମିଶ୍ରଣ ସମୟରେ ସେନାପତି ସାଜିଥିବା ମହତାବ ତାଙ୍କର ବାହିନୀ ମଧ୍ୟରେ ଅନେକ ବ୍ୟକ୍ତିଙ୍କୁ ସାମିଲ କରିଥିଲେ । ସେହି ବାହିନୀ ମଧ୍ୟରେ ସାମିଲ ହୋଇଥିଲେ ସ୍ୱାଧୀନତା ସଂଗ୍ରାମୀ ଓ କବି ବାଞ୍ଛାନିଧି ଦାଶ । ତାଙ୍କର

ମହତାବଙ୍କ ପ୍ରତି ଅଶେଷ ଶ୍ରଦ୍ଧା ଏବଂ ବିଶ୍ୱାସ ପୂର୍ଣ୍ଣମାତ୍ରାରେ ରହିଥିଲା । ଡ଼.ମହତାବଙ୍କର ମଧ୍ୟ ତାଙ୍କ ପ୍ରତି ସମପରିମାଣରେ ବିଶ୍ୱାସ ରହିଥିଲା । ତାହାର ଆଲୋଚନା କରିବା ଯୁକ୍ତିଯୁକ୍ତ ବୋଲି ମୋର ବିଶ୍ୱାସ । କବି ଦାଶଙ୍କ ଦୃଷ୍ଟିରେ ଡ଼.ମହତାବ ଥିଲେ

ସେ ତ ମଣିଷ ଭିତରେ ମଣିଷ ଜଣେ,

ସାରା ଭାରତର ନେତୃ ଦରବାରେ ଉତ୍କଳର ଜନନାୟକ ପଣେ ।

କବିତାଟି ଉତ୍କଳକେଶରୀ ଡ଼.ହରେକୃଷ୍ଣ ମହତାବଙ୍କର ୫୦ତମ ଜନ୍ମବାର୍ଷିକ ଅବସରରେ ଆୟୋଜିତ ସ୍ୱତନ୍ତ୍ର ସମାରୋହରେ କବି ନିଜେ ଗାଇଥିଲେ । ସେ ସମୟରେ ମହତାବ ମହାରାଷ୍ଟ୍ରର ରାଜ୍ୟପାଳ ରୂପେ ଅବସ୍ଥାପିତ ହୋଇଥିଲେ । ସେ ସମୟରେ ଶ୍ରୀ ଦାସ ଅନ୍ୟତ୍ର କାର୍ଯ୍ୟ କରୁଥିଲେ । ମହତାବଙ୍କ ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଆୟୋଜିତ ସଭାଟି ସମ୍ପୂର୍ଣ୍ଣ ଲୋକାରଣ୍ୟ ହୋଇଯାଇଥିଲା । ଏହି କବିତା ପାଇଁ ଶ୍ରୀ ଦାଶଙ୍କୁ ପରବର୍ତ୍ତି ସମୟରେ କିଛି ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତାହାର ଇତିହାସ ରହିଛି । ଉଭୟ ଦାସ ଏବଂ ମହତାବଙ୍କର ଆନ୍ତରିକ ସମ୍ପର୍କ ସବୁ ସମୟରେ ରହି ଆସିଥିଲା । ସ୍ୱର୍ଣ୍ଣଜୟନ୍ତୀ ଅବସରରେ ଡ଼.ମହତାବଙ୍କୁ ସମ୍ମାନ ଜଣାଇ ଗୋଟିଏ ଆକର୍ଷଣୀୟ ସ୍ମରଣୀକା ପ୍ରକାଶିତ ହୋଇଥିଲା । ତାହା ଆଜି ଦୁର୍ଲ୍ଲଭ । ସେଥିରେ ଡ଼. ମହତାବଙ୍କ ଉଦ୍ଦେଶ୍ୟରେ ଭାରତର ଶେଷ ବଡ଼ଲାଟ ମାଉଣ୍ଟବେଟେନ୍, ସି.ରାଜଗୋପାଲଚାରୀ, ଆଚାର୍ଯ୍ୟ କୃପାଳିନୀ, ପଣ୍ଡିତ ଜବାହରଲାଲ ନେହେରୁ ଏବଂ ବହୁ ବିଦେଶୀ ଲେଖକମାନଙ୍କ ସମେତ ଓଡ଼ିଶାର ତୁଙ୍ଗନେତା ମାନଙ୍କର ଲେଖାମାନ ପ୍ରକାଶ ପାଇଥିଲା । କବି ଦାଶ ୫୦ତମ ଜନ୍ମ ଅବସରରେ ମହତାବଙ୍କ ପ୍ରତି ଶ୍ରୀ ଜଗନ୍ନାଥଙ୍କର ଆଶିଷ ସବୁ ସମୟରେ ରହୁ ବୋଲି ଉଲ୍ଲେଖ କରି 'ନୀଳଚକ୍ର କୋଲୁ ଆଶିଷ ଝରୁ' ଶିର୍ଷକ କବିତାଟିଏ ରଚନା କରିଥିଲେ । ଯାହାକି ୩୨ପଦଯୁକ୍ତ ଥିଲା ।

କବି ଶ୍ରୀ ଦାଶ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ''ଦିନେ ଅପ୍ରେଲ୍ ଶେଷ ଆଡ଼କୁ ମୁଁ 'ଆଶା'ରେ କାର୍ଯ୍ୟକରୁଥାଏ । ସୁଧିର ବାବୁ (ଘୋଷ) ଗୋଟିଏ ମଟର ଗାଡ଼ିରେ ଯାଇ ହାଜର, କହିଲେ ମହତାବ ବାବୁ ମୋତେ ପଠାଇଛନ୍ତି । ମୋ ସହିତ ତୁମକୁ କାଲି ବଲାଙ୍ଗୀର ଯିବାକୁ ହେବ ।'' ଏହାପରଠୁ ଶ୍ରୀ ଦାଶ ଗଡ଼ଜାତ ମିଶ୍ରଣ କାର୍ଯ୍ୟରେ ଲାଗିଥିଲେ । ସେ ତାଙ୍କର ପୁସ୍ତକରେ ଉଲ୍ଲେଖ କରିଛନ୍ତି ''ଗଡ଼ଜାତ ମିଶ୍ରଣ ବେଳେ ଆମକୁ କେତେକ ଗଡ଼ଜାତରେ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ବଲାଙ୍ଗୀର, କଳାହାଣ୍ଡୀ, ସୁନ୍ଦରଗଡ଼, ବଣେଇ ପ୍ରଭୃତି ଗଡ଼ଜାତ ମାନଙ୍କରେ ଦିନରାତ୍ର

ରହି କାର୍ଯ୍ୟକରିବାକୁ ପଡୁଥିଲା । ଠକ୍କର ବାପା ସେ ସମୟରେ ଓଡ଼ିଶା ଆସଥାନ୍ତି । ତାଙ୍କ ସହିତ ସୁଧିର ବାବୁ ଓ ମୁଁ ଯାଇ ବିଭିନ୍ନ ସଭାର ଆୟୋଜନ କରୁଥିଲୁ । ସେତେବଳେ ମହତାବ ବାବୁ ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ଥିଲେ । ମହତାବଙ୍କ ସଭାର ଆୟୋଜନ ପାଇଁ ମୋତେ ବିଭିନ୍ନ ଯାଗାକୁ ଯିବାକୁ ପଡୁଥିଲା ।''

ଗଡ଼ଜାତ ମିଶ୍ରଣ କାର୍ଯ୍ୟରେ ମହତାବଜୀ ଦିନରାତି ଏକ କରିଦେଇଥିଲେ । ଓଡ଼ିଶା ମଧରେ ଥିବା ବିଭିନ୍ନ ଗଡ଼ଜାତକୁ ସମ୍ମିଶ୍ରଣ କରି ଅଖଣ୍ଡ ଓଡ଼ିଶା ଗଠନର ରୂପ ଦେବାକୁ ଯେଉଁ ଅଦମ୍ୟପ୍ରୟାସ କରିଥିଲେ ତାହା ସାର୍ଥକତା ଲାଭ କଲା । ଲୌହମାନବ ସର୍ଦ୍ଦାର ପଟେଲଙ୍କର ମହତାବଙ୍କ ପ୍ରତି ଯେଉଁ ବିଶ୍ୱାସ ଥିଲା ତାହାର ରୂପ ଆଜି ଆମେ ଓଡ଼ିଶା ମାନଚିତ୍ର ଦେଖିଲା ବେଳେ ଅନୁଭବ କରୁଛୁ । ଡ଼. ମହତାବଜୀ କଳେବଳେ କୌଶଳେ ଯେଉଁ ସାହସିକତା ଏବଂ ପାରଦର୍ଶିତା ପ୍ରଦର୍ଶନ କରିଥିଲେ ତାହା ପରବର୍ତ୍ତି ସମୟରେ କୌଣସି କାର୍ଯ୍ୟରେ କୌଣସି ନେତାଙ୍କଠାରେ ଆଜିପର୍ଯ୍ୟନ୍ତ ପରିଲକ୍ଷିତ ହୋଇପାରିନାହିଁ । ଇତିହାସ ଏହାର ସାକ୍ଷୀ ରହିଛି ଏବଂ ରହିବ । କାରଣ ସେ ଇତିହାସ ସୃଷ୍ଟି କରିବାର ମଣିଷ । ସେହି ସମୟର ଗୋଟିଏ ଘଟଣା ପ୍ରଦାନ କରାଯିବା ନିହାତି ପ୍ରାସଙ୍ଗିକ । ଏଥିରେ ଡ଼.ମହତାବଙ୍କର ମଣିଷ ପଣିଆ ଏବଂ କର୍ମୀଙ୍କ ପ୍ରତି କିଭଳି ଦରଦ ତଥା ଆନ୍ତରିକତା ଥିଲା ତାହା ସ୍ପଷ୍ଟ । କବି ଶ୍ରୀ ଦାଶ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି ''ବଣେଇ ଗଡ଼ ସଭାପରେ ମହତାବ ବାବୁଙ୍କ ସମ୍ବର୍ଦ୍ଧନା ପାଇଁ ଏକ ଦରବାର ଓ ଭୋଜିର ଆୟୋଜନ ହୋଇଥାଏ । ମହତାବ ବାବୁ ଭୋଜି ସଭାରେ ମୋତେ ପାଖରେ ଡାକି ବସାଇଲେ । ଦରମା ପାଇଲଣି କି ନାହିଁ ବୋଲି ପଚାରିଲେ । ମୁଁ କହିଲି ମୁଁ ଏ କାର୍ଯ୍ୟକୁ ସ୍ୱାଧୀନତା ଅନ୍ଦୋଳନର ଅଙ୍ଗ ବୋଲି ବିଚାରୁଛି, ଆପଣ ସଙ୍ଗେ ସଙ୍ଗେ ସୁଧିର ବାବୁଙ୍କୁ ପଠାଇଲେ ମୁଁ ମଧ ସଙ୍ଗେ ସଙ୍ଗେ 'ଆଶା'ରୁ ଚାଲି ଆସିଲି । ସେତେବେଳକୁ ଛଅମାସ ବିତିଗଲାଣି ମୁଁ କାର୍ଯ୍ୟ କରିଚାଲିଛି । ନିଯୁକ୍ତି ପାଇଛି, ଦରମା ଓ ପାହ୍ୟ ସ୍ଥିର ହୋଇନାହିଁ । ଫାଇଲ ଚାଷ ଚାଲିଛି । ମହତାବ ବାବୁ କହିଲେ କଟକରେ ପହଞ୍ଚି ମୋତେ ସାକ୍ଷାତ କରିବ ।''

ସେତେବେଳେ କିଲ୍ଲାପଡ଼ିଆରେ ସେକ୍ରେଟାରିଏଟ୍ (ବର୍ତ୍ତମାନର ପୁରୁଣା ସେକ୍ରେଟାରିଏଟ୍) ଥାଏ । ମହତାବ ବାବୁଙ୍କୁ ମୁଁ ସାକ୍ଷାତ କରିବା ପୂର୍ବରୁ ସେ ସୁଧୀର ବାବୁଙ୍କ ସହିତ ଫୋନ୍‌ରେ କଥାବାର୍ତ୍ତା ହୋଇସାରିଥିଲେ । ମୋ ସହିତ ତାଙ୍କୁ ଯିବାପାଇଁ କହିଥିଲେ । ମହତାବ ବାବୁଙ୍କୁ ଭେଟିଲି । ମହତାବଜୀ ନାଲିଫିତା କାରସାଦିକୁ ପସନ୍ଦ କରନ୍ତି ନାହିଁ । ସେ ସଙ୍ଗେ ସଙ୍ଗେ ଦୁଇଧାଡ଼ି ଲେଖିଦେଲେ ''ବାଞ୍ଛାନିଧି ବାବୁଙ୍କୁ ଆସିଷ୍ଟାଣ୍ଟ ୱେଲ୍‌ଫେୟାର ଅଫିସର ଭାବେ



କୃଷ୍ଚେଭଙ୍କ ସହ ଡକ୍ଟର ମହତାବ (୧୯୫୫)

ନିଯୁକ୍ତି କରି ରାଧାଶ୍ୟାମ ଦାସଙ୍କର ଦରମା ଏବଂ ପାହ୍ୟା ସହିତ ସମାନ କରିଦିଆଗଲା । '' ଆଜି ମହତାବଜୀ ନାହାନ୍ତି, କିନ୍ତୁ ତାଙ୍କର ମଣିଷପଣିଆ ଏବଂ ଉଦାର ଚିନ୍ତାଧାରା ଏବଂ କାର୍ଯ୍ୟ ଦକ୍ଷତା ଯିଏ ଜାଣିଛି ସେ ନିଶ୍ଚିତ ଭାବରେ ମନେ ରଖିଛି । ଉପରୋକ୍ତ ଘଟଣା ହୁଏତ ଜଣେ ବ୍ୟକ୍ତିବିଶେଷଙ୍କ ପାଇଁ ହୋଇପାରେ ବୋଲି ବିଚାର କରାଯିବ, କିନ୍ତୁ ତାହା ପ୍ରକୃତରେ ସମଗ୍ର ଓଡ଼ିଶାବାସୀ ଏବଂ ଯିଏ ଯେଉଁ କ୍ଷେତ୍ରରେ ତାଙ୍କ ସହିତ କାର୍ଯ୍ୟକରିଛି ସେମାନେ ଏହାକୁ ଉପଯୁକ୍ତ ଭାବରେ ଗ୍ରହଣ କରିପାରିବେ । ଗଡ଼ଜାତ ମିଶ୍ରଣ ସମୟରେ କବି ଦାସଙ୍କୁ ସଭା ଆରମ୍ଭରେ କବିତା ଗାନ କରିବାକୁ ଦିଆଯାଇଥିଲା । ସେତେବେଳେ ମାଇକ୍ରୋଫୋନ୍‌ର ବ୍ୟବସ୍ଥା ଅତ୍ୟନ୍ତ ସ୍ୱଳ୍ପ ଗତି ବିଶିଷ୍ଟ ଥିଲା । ତଥାପି ଜନସାଧାରଣଙ୍କୁ ଆକୃଷ୍ଟ କରିବାପାଇଁ ପ୍ରଥମେ ଉଦ୍‌ବୋଧନୀମୂଳକ ସଙ୍ଗୀତ ଗାନ କରାଯାଇଥିଲା । ସେହି ଗଡ଼ଜାତ ମିଶ୍ରଣ ସମୟରେ ରଚିତ ଗୋଟିଏ କବିତା ଏଠାରେ ଉଲ୍ଲେଖ କରାଗଲା-

ଗଡ଼ଜାତ ପାଇକ ଛୁଆ
ଟାଙ୍ଗର ଭୂଇଁରେ ମୋର ଘର ରେ
(ଆମେ) ଗଡ଼ଜାତ ପାଇକ ଛୁଆ,
ବଣ ପାହାଡ଼ରେ ମୋର ମୂଲକ ଘେରାରେ
(ଆମ) ହାଡ଼ ଭାଙ୍ଗେ ପଥର ଲୁହା
ଲୁହ ଲହୁ ଢାଳି ଗଢ଼େ ଗଢ଼ିଲୁ ରାଜା
ରେ ଗଢ଼ିଲୁ ରାଜା
ଆମ ହାଡ଼ ମାଳେ ସେତ ବଜାଇଲେ ବାଜାରେ
ବଜାଇଲେ ବାଜା ।
(ତୁ) ମାଦଳ ବଜା
ଉଠ ଏବେ ଗଡ଼ଜାତ ପାଇକ ଛୁଆରେ
ଗଢ଼ ଏବେ ତୋ ଦେଶ ନୂଆ ।
ଅନ୍ଧାରି ମୂଲକେ ଏବେ ଜଳା ଦୀପାଳି ରେ
ଜଳା ଦିପାଳି
ଯା ଲାଗି ବାଜିଆ ଦେଲା ରୁଧିର ଢାଳି ରେ
ରୁଧିର ଢାଳି ରେ
(ଆଜି) ବାଜିଆ ବିଜୟ ବାଜା ବଜାରେ
ଗଢ଼ି ଚାଲ ଦୁନିଆ ନୂଆ ।

ଆଜି ମହତାବଜୀ ନାହାଁନ୍ତି, ତାଙ୍କର ସ୍ୱର୍ଣ୍ଣଗାଥା ରହିଯାଇଛି । ସେ ବିସ୍ମୟ ପୁରୁଷ ଆଖ୍ୟା ପାଉଛନ୍ତି । ଆମେ ଶ୍ରଦ୍ଧାରେ ଉତ୍କଳକେଶରୀ ବୋଲି ସମ୍ବୋଧନ କରୁଛୁ । କେବଳ ଉତ୍କଳକେଶରୀ କହିଦେଇ ଆମେ ଆମର କାର୍ଯ୍ୟ ସାରିଦେଉଛୁ । ଏଭଳି ବ୍ୟକ୍ତିତ୍ୱଙ୍କୁ ଭାରତରତ୍ନ କେବେ ଦିଆଯିବ ତାହା ଦେଖିବାକୁ ବାକି ରହିଲା । ରାଜନୀତି ଓ ଦଳମତ ନିର୍ବିଶେଷରେ ତାଙ୍କ ପାଇଁ ଓଡ଼ିଆ ଜାତି କ'ଣ ଏତିକି ଦାବି କେନ୍ଦ୍ରରେ ରଖିପାରିଲା ନାହିଁ ଆଜିପର୍ଯ୍ୟନ୍ତ । ଏହା ବିଡ଼ମ୍ବନା ନୁହେଁତ ଆଉ କ'ଣ ?

*ମହତାବ ରୋଡ, କଟକ*



# ଡଃ ମହତାବଙ୍କ ଈଶ୍ୱର ବିଶ୍ୱାସ ଓ ଧର୍ମଧାରଣା

ଡା. କିରଣ ଚନ୍ଦ୍ର ଗୁଇଁ

ଦିବ୍ୟ ଦ୍ରଷ୍ଟା ପ୍ରଜ୍ଞା ପୁରୁଷ ଡଃ. ହରେକୃଷ୍ଣ ମହତାବଙ୍କ ସୂକ୍ଷ୍ମ ଦୃଷ୍ଟି ଭଙ୍ଗିଥିଲା ବହୁଧା, ପ୍ରତିଟି ସର୍ଜନାତ୍ମକ ଚିନ୍ତା ଧାରାର ଶୈଳୀ ଥିଲା ଗଠନ ମୂଳକ। ନିଃସ୍ୱାର୍ଥ ଜାତୀୟତାରେ ସେ ଥିଲେ ଅଗ୍ରଗଣ୍ୟ ବୀର। ଯାହା ଖୁବ୍ କମ୍ ଲୋକଙ୍କଠାରେ ଦେଖାଯାଏ। ଜାତୀୟ ଚେତନା ଓ ଜାତି ଗଠନରେ ପ୍ରତ୍ୟୁତ୍ପନ୍ନମତି ଥିଲା, ସେ ଆଜନ୍ମରୁ ସତ୍ ସାହସୀ ଜାତି ପ୍ରେମୀ, ଈଶ୍ୱର ବିଶ୍ୱାସୀ ଓ ଉଦାର ହୃଦୟର ଗାନ୍ଧୀ ବାଦୀ ଥିଲେ। ଗାନ୍ଧୀଜୀଙ୍କ ଆଦର୍ଶ ଓ ନୀତିକୁ ନିଜ ଜୀବନରେ ପାଳନ କରୁଥିଲେ ଓ କାର୍ଯ୍ୟରେ ଲଗାଉଥିଲେ। ସେ କେବେ ଆଜିର ନେତାମାନଙ୍କ ଭଳି ମିଥ୍ୟା କଥା ବା କୌଣସି ମିଥ୍ୟା ପ୍ରତିଶ୍ରୁତି ଦେଉ ନଥିଲେ। ଗୋଟିଏ କଥା ମୁଁ ଆଖିରେ ଦେଖିଛି, ଥରେ ଭଦ୍ରକ ଗାନ୍ଧୀ ପଡିଆରେ ଗୋଟିଏ ସଭାରେ ଡଃ. ମହତାବ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓ ସଭା କରୁ ଥାଆନ୍ତି, ଭଦ୍ରକ କଲେଜର କିଛି ପିଲା ତାଙ୍କୁ କଲେଜ ସମ୍ବନ୍ଧରେ ଦାବିପତ୍ର ଦେଲେ। ସେ ସେହି ଦାବିପତ୍ରକୁ ନିଜେ ପଢିଲେ ଓ ତାଙ୍କୁ କହିଲେ ଠିକ୍ ଅଛି। ପୁଣି କିଛି ସମୟପରେ ଆଉ ଗୋଟିଏ ଦାବିପତ୍ର ନେଇ ପିଲା ଆସିଲେ ଓ ତାହା ଗ୍ରହଣ କରି ପଢିଲେ। ତାଙ୍କୁ କହିଲେ ହଉ, ସେହିଠାରେ ପିଲା ଆହୁରି କେତେ କଥା ତାଙ୍କୁ କହିଲେ ସେ ଉତ୍ତର ଦେଲେ ହଁ ଠିକ୍ ଅଛି। ଗୋଟିଏ ଗୋଟିଏ କାମ ସରିଲେ ପୁଣି ଅନ୍ୟ କଥା କହିବ, ବୁଝିବା। ଖାଲି ମିଥ୍ୟା ପ୍ରତିଶ୍ରୁତି ଦେବା ଉଚିତ୍ ନୁହେଁ ଓ ମୁଁ ଏହା କରେ ନାହିଁ। ଏଠାରେ ବିଶେଷ କଥା ଯେ, ଭଦ୍ରକ କଲେଜ

ସର୍ଜନାରେ ଅନ୍ୟମାନଙ୍କ ଭିତରେ ସେ ଥିଲେ ମୁଖ୍ୟ ପୁରୋଧା । ଏକ ଗ୍ରାମୀଣ ସ୍ଥାନ ଆଗର ପଡାରୁ ନେତୃତ୍ୱ ନେଇ ସାରା ଭାରତ ବର୍ଷକୁ ନିଜ ନିଷ୍ଠା ଓ ଦୀକ୍ଷାନ୍ତ କର୍ମ କର୍ତ୍ତବ୍ୟ ବଳରେ ପ୍ରସାରିତ କରିଥିଲେ । ଭାରତ ବାହାରେ ମଧ୍ୟ ତାଙ୍କର ଖ୍ୟାତି ବହୁତ ଥିଲା । ବିଶ୍ୱର ବଡ ବଡ ନେତା ମାନଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା, ଚିଠିପତ୍ରର ଆଦାନ ପ୍ରଦାନ ମଧ୍ୟ ଥିଲା । ଯାହା କେଡେ ଗୌରବର କଥା । ତାଙ୍କ କର୍ମ, କର୍ତ୍ତବ୍ୟ ଓ ଈଶ୍ୱର ବିଶ୍ୱାସ ତାଙ୍କର ଗୋଟିଏ କବିତାର ପଦେ ମନେ ପକାଉଛି । 'ଗୁରୁ ଲଘୁ ଲଘୁ ଗୁରୁ ବିଧାତା ବିଧାନ, ବହୁ ଆଡମ୍ବେ ଲଘୁକ୍ରିୟା ହୁଅଇ ଯେସନ ।' ସେ ଲେଖିଛନ୍ତି ଆଜି ପୃଥିବୀ ସାରା ମନୁଷ୍ୟର ଭାବ ଜଗତରେ ଏକ ବିରାଟ ବିପର୍ଯ୍ୟୟ ଘଟିଛି । ଯେଉଁ ସବୁ ମନୋବୃତ୍ତି ମନୁଷ୍ୟ ପକ୍ଷରେ ନିନ୍ଦନୀୟ ବୋଲି ପରିଗଣିତ ହେଉଥିଲା, ତାହା ଆଜିକାଲି ଏତେ ସାଧାରଣ ହୋଇଯାଇଛି ଯେ ସେ ସବୁ ପ୍ରସଂସାର ସ୍ଥାନ ଅଧିକାର କରିବାରେ ଲାଗିଛି । ଗୋଟିଏ କଥାକୁ ଗମ୍ଭୀର ଭାବେ ଘେନାଯାଉ । ସେ କହୁଛନ୍ତି, ମନୁଷ୍ୟର ଆଚରଣ ଶୁଦ୍ଧି ସମ୍ବନ୍ଧରେ । ଆଚରଣ ଶୁଦ୍ଧି ପାଇଁ ମନୁଷ୍ୟର ବିଚାର ଧାରା ମଧ୍ୟ ଶୁଦ୍ଧ ହେବା ଆବଶ୍ୟକ । ଏହି ବିଚାର ଧାରାକୁ ଶୁଦ୍ଧ କରିଛି ସାହିତ୍ୟ ଶତ ଶତ ଯୁଗର ନିରବଛିନ୍ନ ସାଧନା ଓ କାର୍ଯ୍ୟ ଫଳରେ, ପିତ୍ରାଦେଶ ପାଳନ, ଗୁରୁଜନଙ୍କ ପ୍ରତି ସମ୍ମାନ, ଭାତୃ ପ୍ରେମ ସହିତ ପରଦ୍ରବ୍ୟ ପ୍ରତି ବିତୃଷ୍ଣା ଇତ୍ୟାଦି । ସେ ସାହିତ୍ୟକୁ ଆହ୍ୱାନ ଦେଇ ଯେଉଁ ମହାନ୍ ମୂଲ୍ୟବାନ୍ କଥା କହିଛନ୍ତି ଓ ନିଜ ସାହିତ୍ୟ ସାଧନାରେ ଦେଇଯାଇଛନ୍ତି ଅନେକ ଅନେକ କଥା ସେଥିରେ ତାଙ୍କର ବ୍ୟକ୍ତିତ୍ୱ ଓ ଧର୍ମ ଧାରଣାର ଦିଗ ସ୍ପଷ୍ଟ ପ୍ରତିୟମାନ । ମଣିଷ ଓ ସମାଜ ପାଇଁ ସେ ଯାହା କହିଛନ୍ତି ଓ କରିଛନ୍ତି, ଆଜି ଆମ ନେତାମାନେ ଓ ଆମେ କ'ଣ କରିଛୁ ? ସେ ଈଶ୍ୱର ପରାୟଣ ଥିଲେ ଓ ଧର୍ମ ପରାୟଣ ଥିଲେ । ତାଙ୍କ ବ୍ୟକ୍ତିତ୍ୱ ବହୁମୁଖୀ ପ୍ରତିଭାରେ ସୁମଣ୍ଡିତ ଥିଲା ଓ ସେ ବହୁମୁଖି ଚିନ୍ତା ଚେତନା ଓ କର୍ମ କର୍ତ୍ତବ୍ୟରେ ବହୁଦା ଭାବେ ସକ୍ରୀୟ ଥିଲେ । ଏହାର ନିଛକ ଓ ବଳିଷ୍ଠ ପ୍ରମାଣ ତାଙ୍କ ରାଜନୈତିକ ଜୀବନ, ସାହିତ୍ୟ ସାଧନା, ଦେଶ ଗଠନ, ଜାତୀୟ ଚେତନା ଇତ୍ୟାଦିରେ ସେ ପ୍ରକୃତ କେଶରୀ ସଦୃଶ ପରାକ୍ରମୀ ଥିଲେ । ତାଙ୍କର ରାଜନୈତିକ ଜୀବନରେ ଶାସନ ଦକ୍ଷତା, ସାଙ୍ଗଠନିକ ଶକ୍ତି ପାଇଁ ସେ ସେତେବେଳର ସାରା ଦେଶ ଓ କେନ୍ଦ୍ର ନେତୃତ୍ୱ ଡଃ. ମହତାବଙ୍କୁ ବିଶେଷ ଭାବେ ଗୁରୁତ୍ୱ ଦେଉଥିଲେ । ଆବୁଲ କଲାମ ଆଜାଦ, ଜବାହାରଲାଲ ନେହେରୁ, ରାଜେନ୍ଦ୍ର ପ୍ରସାଦ ପ୍ରମୁଖ କେନ୍ଦ୍ରର

ମହାନ୍ ନେତାମାନେ ଡଃ. ମହତାବଙ୍କ ବ୍ୟକ୍ତିତ୍ୱ ଓ ରାଜନୈତିକ ଧୂରୀନତା ପାଇଁ ତାଙ୍କ ଉପରେ ପୂର୍ଣ୍ଣ ଭରସା ରଖୁଥିଲେ। ଏହା ତତ୍କାଳର ସେମାନଙ୍କ ଚିଠିରୁ ପ୍ରମାଣ ମିଳେ ।

ତା'ପରେ ମହତାବଙ୍କ ବ୍ୟକ୍ତିଗତ ଜୀବନ ବଡ ଗମ୍ଭୀର ଜ୍ଞାନଚର୍ଚ୍ଚା ଉପରେ ପର୍ଯ୍ୟବସିତ ଥିଲା। ଏଥିରେ ସେ କେତେ ନିଷ୍ଠାବାନ୍ ଓ ବାସ୍ତବ ଜୀବନ କଥା ବିଚାରୁଥିଲେ। ତାଙ୍କ ଜେଲ୍ ଜୀବନରେ ସେ ୧୯୨୨ ସାଲ୍ ଭାଗଲପୁର ଜେଲ୍‌ରେ ତିଳକ ମହାରାଜାଙ୍କ 'ଗୀତା ରହସ୍ୟ' ତାଙ୍କର ଏକମାତ୍ର ସହାୟକ ଓ ସର୍ବସ୍ୱ ରକ୍ଷାକର୍ତ୍ତା ଥିଲା। ସେ ନିଜେ ଲେଖିଛନ୍ତି 'ଗୀତା ରହସ୍ୟ' ସେତେବେଳେ ମୋର ଏକମାତ୍ର ବନ୍ଧୁ, ପରାମର୍ଶଦାତା ଓ ପରିଚାଳକ ଥିଲା। ଗୀତାକୁ ଆଶ୍ରୟ କରି ନଥିଲେ ସେ ସମୟର ବେଡି ହାତକଡିକୁ ସମ୍ଭାଳିବା ଅତି କଷ୍ଟକର ହୋଇଥାନ୍ତା। କେବଳ ମୁଁ ନୁହେଁ ସେ ସମୟର ରାଜନୈତିକ ବନ୍ଦୀମାନେ ନୁହନ୍ତି, ଆମ ପୂର୍ବରୁ ବଙ୍ଗ ପ୍ରଦେଶରେ ଯେଉଁମାନେ ସନ୍ତ୍ରାସବାଦୀ (ଦୃଢନିଷ୍ଠ ସ୍ୱାଧୀନତା ସଂଗ୍ରାମୀ) ଆନ୍ଦୋଳନରେ ନିଜ ଜୀବନକୁ ହାତ ମୁଠାରେ ଧରି ମାତିଥିଲେ ସେମାନେ ଅନ୍ୟଏକ ହାତରେ ମଧ୍ୟ ଗୀତା ଧରିଥିଲେ। ଶ୍ରୀ ଅରବିନ୍ଦଙ୍କ ଜୀବନୀ ଆଲୋଚନା କଲେ ଜଣା ପଡିବ କିପରି ସେ ସମୟର ଆନ୍ଦୋଳ ସହିତ ଆଧାତ୍ମିକତାର ସମ୍ପର୍କ ଥିଲା। ଅସହଯୋଗ ଆନ୍ଦୋଳନ ବେଳେ ଯେତେବେଳେ ସହସ୍ର ସଂଖ୍ୟାରେ ସ୍ତ୍ରୀ, ପୁରୁଷ, ବାଳକ, ବୃଦ୍ଧ ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ ସେତେବେଳେ ଗୀତା ଥିଲା ସମସ୍ତଙ୍କର ସହଚରୀ। 'ଗୀତା ଓ ଜନତା' ଆଲୋଚନା କରି ଲେଖିଲାବେଳେ ତାଙ୍କ ହୃଦୟର ଅନୁଭବର କଥା ସେ କହିଛନ୍ତି। ' ଗୀତା, ରାମାୟଣ, ମହାଭାରତ, ଭାଗବତ ଆଦି ଗ୍ରନ୍ଥ ଗୁଡିକ ସିଦ୍ଧାନ୍ତ ଓ ଗୀତାର ଶ୍ଳୋକ ଗୁଡିକ ପଢି ବୁଝି ନିଜ ଜୀବନରେ କର୍ମ କର୍ତ୍ତବ୍ୟରେ ଲଗାଉଥିଲେ। ଯାହା ଯୋଗୁଁ ସ୍ୱାମୀ ବିବେକାନନ୍ଦ ଆଜି ବିଶ୍ୱ ବିଜୟୀ ହୋଇଛନ୍ତି ।

ସାହିତ୍ୟ ସାଧକ ମହତାବ ଗୋଟିଏ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ, ଗଳ୍ପ ଉପନ୍ୟାସ, କବିତା, ପ୍ରବନ୍ଧ ଓ ଗଦ୍ୟ ସାହିତ୍ୟ ସବୁଥିରେ ଥିଲେ ସିଦ୍ଧ ହସ୍ତ। ମହତାବଙ୍କର ସାହିତ୍ୟ କୃତି ମଧ୍ୟରେ, ଇତିହାସ ଲେଖକ ମହତାବଙ୍କ ଐତିହାସିକ ଚିନ୍ତାଧାରା ବହୁ ସୁଦୂର ପ୍ରସାରିଥିଲା। 'ଉଠାଦୋକାନୀର ନୋଟିସ୍' କବିତାଟି ପଢିଲେ ଏହି ଗୋଟିଏ କବିତାରୁ ତାଙ୍କ ହୃଦୟର ଭାବନା, ତାଙ୍କ ଜୀବନର ବିଚାରଧାରା ଓ ଜୀବନ ଶୈଳୀ ସ୍ପଷ୍ଟ ବୁଝି ହୁଏ ତାଙ୍କ ସାହିତ୍ୟର ଅନ୍ୟାନ୍ୟ ଦିଗ ବହୁତ ଅଛି, ତାଙ୍କ ଜୀବନର ପୂର୍ଣ୍ଣାଙ୍ଗ ଚିତ୍ର ଗୋଟିଏ ମହାନ୍ ଗ୍ରନ୍ଥ।

ତାଙ୍କ ଧର୍ମୀୟ ଭାବନରେ ' ଭାଗବତ ଓ ଜନତା' ସେ କହୁଛନ୍ତି ' ସନ୍ଥ ଜଗନ୍ନାଥ

ଦାସଙ୍କ କୃପାରୁ ଶ୍ରୀମଦ୍ ଭାଗବତ ପୁରାଣ ଓଡିଶାର ପ୍ରାୟ ପ୍ରତି ଘରେ ପଢା ହୋଇଥାଏ ଏବଂ ପୂଜା ପାଇଥାଏ। ଏତଦ୍ ବ୍ୟତୀତ ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ଗୋପଲୀଳା ଯେତେ ସାହିତ୍ୟ ସଙ୍ଗୀତ ନାଟକ ଓ କଳା ସୃଷ୍ଟି କରିଛି ସେଥିରେ ଶ୍ରୀମଦ୍ ଭାଗବତ କେହି ପଢି ନଥାନ୍ତୁ ପଛକେ, ସେ ପୁରାଣ ସମ୍ବନ୍ଧରେ ପ୍ରତ୍ୟେକ ହିନ୍ଦୁର କିଛି ସ୍ପଷ୍ଟ ଧାରଣା ଅଛି।' ବୌଦ୍ଧ ଯୁଗରେ ବୁଦ୍ଧଙ୍କୁ କେନ୍ଦ୍ର କରି ଯେପରି ଅସଂଖ୍ୟକ ଭିକ୍ଷୁଙ୍କ ଦ୍ୱାରା ସାହିତ୍ୟର ପ୍ରବାହ ସୃଷ୍ଟି ହୋଇଥିଲା, ସେହିପରି ତତ୍ ପରବର୍ତ୍ତୀ ଯୁଗରେ ଶ୍ରୀକୃଷ୍ଣଙ୍କୁ କେନ୍ଦ୍ରକରି ଅସଂଖ୍ୟ ଭକ୍ତଙ୍କ ଦ୍ୱାରା ସାହିତ୍ୟର ସ୍ରୋତ ସୃଷ୍ଟି ହୋଇଛି।' ଏସବୁ ଲେଖାରୁ ତାଙ୍କ ଧର୍ମୀୟ ଚେତନା ଓ ବିବେଚନା ସ୍ପଷ୍ଟ ଅନୁମାନ କରାଯାଏ। ସେ କହୁଛନ୍ତି, ଏଥିରୁ ସ୍ପଷ୍ଟ ବୁଝାଯିବ ଶ୍ରୀମଦ୍ ଭଗବତ୍ ପୁରାଣ ଲକ୍ଷ୍ୟ ହେଉଛି ବ୍ରହ୍ମ ଓ ଆତ୍ମାର ଏକତ୍ୱ ବୋଓ ଏବଂ ତା'ର ପ୍ରାପ୍ତିର ସାଧନା ହେଉଛି ବୈରାଗ୍ୟ। ଏହି ଉଦ୍ଦେଶ୍ୟରେ ଶ୍ରୀ ହରିଙ୍କ ଲୀଳା ବର୍ଣ୍ଣିତ ହୋଇଛି।' ଏସବୁକୁ ଦେଖିଲେ ଓ ପଢିଲେ ଜଣାଯାଏ ମହତାବ ବହୁଦର୍ଶୀ ଓ ପ୍ରଚଣ୍ଡ ପ୍ରତିଭାରେ ମହା ନାୟକ ଥିଲେ। ସେ ଥିଲେ ଜଣେ ବିଚକ୍ଷଣ ରାଜୀତିଜ୍ଞ, କୂଟନୀତିଜ୍ଞ ଓ ବହୁ ଦୂରଦୃଷ୍ଟି ସମ୍ପନ୍ନ ଅପରାଜେୟ ନେତା ଓ ଅସାଧାରଣ ମଣିଷ। ଏଯାଏ ଓଡିଶାରେ ତାଙ୍କ ସ୍ଥାନ ପୂରଣ ହୋଇପାରିନାହିଁ ଯାହା ଓଡିଶା ବାସୀଙ୍କ ପାଇଁ ଏକାନ୍ତ ଆବଶ୍ୟକ। ଆଜି ଓଡିଶାର ଓ ଓଡିଆ ଭାଷାର ଯେଉଁ ଦୁର୍ଗତି ଏ କେବଳ ତାଙ୍କ ଭଳି ବ୍ୟକ୍ତି ଓ ବ୍ୟକ୍ତିତ୍ୱ ଦରକାର। ତାଙ୍କ ଆଭିମୁଖ୍ୟକୁ ନେଇ କେହି ନିଜକୁ ଗଢୁ ନାହନ୍ତି ଆଉ ତାଙ୍କ ଭଳି ସତ୍ ସାହସୀ ହୋଇ ନିଷ୍ଠାର ସହିତ କାର୍ଯ୍ୟ କରୁ ନାହାନ୍ତି। ଆଜି ତାଙ୍କ ସୃଷ୍ଟ ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ଡଃ. ହରେକୃଷ୍ଣ ମହତାବ ଫାଉଣ୍ଡେସନ୍ ସାହିତ୍ୟ, ସଂସ୍କୃତ, ପରମ୍ପରାର ରକ୍ଷା ଓ ଜାତି ଗଠନରେ ତାଙ୍କ ଭୂମିକା ସୂଚାରୁ ରୂପେ ତୁଲାଇ ଆସୁଛନ୍ତି, ସେହିପରି ତୁଲାଉଥାଉ ଏବଂ ତାଙ୍କର ସୁଯୋଗ୍ୟ ସନ୍ତାନ ଆଜିର ସାଂସଦ ସେହି ନିଷ୍ଠା, କର୍ତ୍ତବ୍ୟ ପରାୟଣତାରେ ମହତାବଙ୍କ ଆଦର୍ଶକୁ ବଜାୟ ରଖନ୍ତୁ। ଶ୍ରୀ ଜଗନ୍ନାଥ ତାଙ୍କୁ ଆଶୀର୍ବାଦ କରନ୍ତୁ। ଆଜି ସେହିପରି ଜଣେ ମହତ୍ୱପୂର୍ଣ୍ଣ ବ୍ୟକ୍ତିଙ୍କୁ ସ୍ମରଣ କରି ତାଙ୍କ ଜୟନ୍ତୀରେ ଦୁଇପଦ ଲେଖି ତାଙ୍କୁ ପ୍ରଣାମ ଜଣାଇ ରହୁଛି ।

ଦେବେନ୍ଦ୍ରନାଥ ହୋମିଓ କ୍ଲିନିକ୍
ପୁରୁଣା ବଜାର, ଭଦ୍ରକ



# ରାଷ୍ଟ୍ର ଗଠନରେ ଡକ୍ଟର ମହତାବଙ୍କ ଅବଦାନ

ଖୁସ୍‌ବୁ ପ୍ରଧାନ

କୀର୍ତ୍ତି-କିରୀଟିନୀ ଉତ୍କଳ ଜନନୀ ପ୍ରସବ କରିଛି ଅନେକ ବୀର ଓ ବରପୁତ୍ରଙ୍କୁ । ସ୍ନେହମୟୀ ଉତ୍କଳମାତାର ପବିତ୍ର କୋଳରେ ଜନ୍ମ ନେଇଛନ୍ତି ଅନେକ ଯୋଗଜନ୍ମା ଏବଂ ନିଜର କୀର୍ତ୍ତି ବଳରେ ଉତ୍କଳ ମାତାର କୋଳକୁ ନୂତନ ରୂପ ଦେଇଛନ୍ତି ଏବଂ ଉତ୍କଳ ମାତାର ମୁଖକୁ ଉଜ୍ଜ୍ୱଳ କରିଛନ୍ତି । ଯେଉଁମାନେ ଉତ୍କଳମାତାର ହାତରୁ ପରାଧୀନତାର କଠିନ ବିଶୃଙ୍ଖଳକୁ ଛିନ୍ନ କରି ସ୍ୱାଧୀନତାର ମୁକୁଟ ପରିଧାନ କରାଇଛନ୍ତି, ଯେଉଁମାନେ ଛିନ୍ନମସ୍ତା ଉତ୍କଳମାତାର ନବକଳେବର ସୃଷ୍ଟି କରିଛନ୍ତି, ଯେଉଁମାନେ ଓଡ଼ିଶାକୁ ଆଧୁନିକ ଓଡ଼ିଶାରେ ପରିଣତ କରିବା ପାଇଁ ନିଜର ଶ୍ରମ ସ୍ୱୀକୃତ କରିଥିଲେ । ସେମାନଙ୍କ ମଧ୍ୟରେ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ ଅନ୍ୟତମ । ପ୍ରାଚୀନ କାଳରେ ଆର୍ଯ୍ୟ ଋଷିମାନେ କହୁଥିଲେ 'ଜଗତ ହିତାୟ କୃଷ୍ଣାୟ' । ଜଗତର ହିତ ସାଧନା କରିବାରେ ଉଦାରତା ପରିକଳ୍ପନା କରିବା ଅତି ମହତର୍ । ଆପେ ବଞ୍ଚି ରହିବା ବଡ଼ କଥା ନୁହେଁ, ବରଂ ଆପେ ବଞ୍ଚି ରହିବା ସହିତ ଅନ୍ୟର ଜୀବନ ଧାରଣରେ ସହାୟତା ଦେବା ବଡ଼ କଥା । ଡକ୍ଟର ହରେକୃଷ୍ଣ ମହତାବ ଏକାଧାରାରେ ଥିଲେ ଐତିହାସିକ, ପ୍ରାବନ୍ଧିକ, ରାଷ୍ଟ୍ରନୀତିଜ୍ଞ, କୂଟନୀତିଜ୍ଞ, ଶିଶୁସାହିତ୍ୟିକ, କବି, ଔପନ୍ୟାସିକ, ନିର୍ଭୀକ କରିତ୍‌କର୍ମା ଓ ନବଉତ୍କଳର ନିର୍ମାତା ।

ଡକ୍ଟର ହରେକୃଷ୍ଣ ମହତାବଙ୍କ କର୍ମମୟ ଜୀବନ ସମୁଦ୍ରପରି ଦିଗନ୍ତପ୍ରସାରୀ, ସରିତ ପରି ଗତିଶୀଳ ଓ ଚଳଚଞ୍ଚଳ ଥିଲା । ସ୍ୱାଧୀନତା ସଂଗ୍ରାମରେ ମହତାବଙ୍କର ନିଃସ୍ୱାର୍ଥପର କାର୍ଯ୍ୟ ଓ ଦେଶ ପ୍ରୀତି ଅନନ୍ୟ ସାଧାରଣ ଅଟେ । ଭାରତୀୟ ମୁକ୍ତି ସଂଗ୍ରାମର ମହା ସେନାନାୟକ ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ଅନେକ ଜାତୀୟତାବାଦୀ ଛାତ୍ରମାନଙ୍କ ଭଳି ମହତାବ ମଧ୍ୟ ଅଧ୍ୟୟନ ସମାପ୍ତ ନକରି ଶିକ୍ଷାନୁଷ୍ଠାନ ତ୍ୟାଗ କରି ମୁକ୍ତି ସଂଗ୍ରାମର ନେତୃତ୍ୱ ନେଇଥିଲେ । ଭଦ୍ରକ ଓ ବାଲେଶ୍ୱର ଥିଲା ତାଙ୍କର କର୍ମଭୂମି । ୧୯୨୪ ମସିହାରେ ଡକ୍ଟର ମହତାବ ବାଲେଶ୍ୱର ଜିଲ୍ଲା ପରିଷଦର ଅଧକ୍ଷ ଭାବେ ନିର୍ବାଚିତ ହୋଇଥିଲେ । ଏହିଠାରୁ ସେ ଲୋକପ୍ରତିନିଧିତ୍ୱର ସୁଯୋଗ ଲାଭ କରିଥିଲେ । ୧୯୩୧ ଖ୍ରୀଷ୍ଟାବ୍ଦରେ ଭାରତୀୟ ଜାତୀୟ କଂଗ୍ରେସର ପୁରୀ ଅଧିବେଶନ ଆୟୋଜନରେ ସକ୍ରିୟ ଅଂଶଗ୍ରହଣକରି ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ମହତାବଙ୍କ ସାହସିକ ପଦକ୍ଷେପ ଓ ବଳିଷ୍ଠ ନେତୃତ୍ୱ ଯୋଗୁଁ ହରିଜନମାନେ ଓଡ଼ିଶାରେ ପ୍ରଥମକରି ମନ୍ଦିରରେ ପ୍ରବେଶ କରିପାରିଥିଲେ । ରାଜ୍ୟ କଂଗ୍ରେସର ସଭାପତି ରୂପେ ସେ ୧୯୩୭ ମସିହାରେ ନିର୍ବାଚିତ ହୋଇଥିଲେ । ୧୯୩୮ରେ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସମିତି ସଭ୍ୟ ରୂପେ ତାଙ୍କୁ ମନୋନୀତ କରାଯାଇଥିଲା । ୧୯୪୬ରେ ସେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ପରେ ମୁଖ୍ୟମନ୍ତ୍ରୀ ରୂପେ କାର୍ଯ୍ୟନିର୍ବାହ କରିଥିଲେ । ୧୯୫୫-୫୬ରେ ତତ୍କାଳୀନ ବମ୍ବେ ପ୍ରଦେଶର ରାଜ୍ୟପାଳ ହୋଇଥିଲେ । ଡକ୍ଟର ହରେକୃଷ୍ଣ ମହତାବ ୧୯୫୬ ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ । ୧୯୭୧ ଓ ୧୯୭୪ ମସିହାରେ ସେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ ।

ଓଡ଼ିଶାର ବରେଣ୍ୟ ଜନନାୟକ, ଜନଭାଗବାନଙ୍କର ପରମପୂଜାରୀ, ଜାତି କର୍ଣ୍ଣଧାର, ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ ନିଜର ପବିତ୍ର ଜୀବନକୁ ଜନହିତ ନିମନ୍ତେ ସର୍ବଦା ନିୟୋଜନ କରି ରଖିଥିଲେ । ସେ ନିଜର ଯୁବ ସୁଲଭ ଉଦ୍ଦାମ ଶକ୍ତିକୁ ଦେଶ ଜନନୀର ସେବାରେ ନିୟୋଗ କରିଥିଲେ । ଗଡ଼ଜାତ ରାଜ୍ୟଗୁଡ଼ିକର ମିଶ୍ରଣରେ ମହତାବ ଶ୍ରେଷ୍ଠ ନେତୃତ୍ୱ ନେଇଥିଲେ । ଡକ୍ଟର ମହତାବ ନିଜର ନେତୃତ୍ୱରେ କଟକ ସହରରେ ବିଭିନ୍ନ ସଭାସମିତି ଗଠନ କରିଥିଲେ । ଭୁବନେଶ୍ୱରକୁ ଏକ ରାଜଧାନୀ

ଭାବେ ଘୋଷଣା କରିଥିଲେ । ଏତଦ୍‌ବ୍ୟତୀତ ମହତ ମଣିଷ ଡକ୍ଟର ହରେକୃଷ୍ଣ ମହତାବ ପାରାଦୀପ ବନ୍ଦର ନିର୍ମାଣ କରିଥିଲେ । ଉତ୍କଳମାତା ନିମନ୍ତେ ଅନେକ କାର୍ଯ୍ୟ କରି ମହତ ମଣିଷ ମହତାବଙ୍କୁ ବହୁବାର ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା । ୧୯୨୧, ୧୯୨୭, ୧୯୩୦, ୧୯୩୨ ଓ ୧୯୪୨ ମସିହାରେ ସେ କାରାବରଣ କରିଥିଲେ । ମହତାବ ସ୍ୱଦେଶ ଆନ୍ଦୋଳନର ବାଣୀକୁ ଗ୍ରାମ୍ୟ ଭୂମିରେ ବୁଲିବୁଲି ପ୍ରଚାର କରିଥିଲେ । ବାସ୍ତବରେ ଡକ୍ଟର ହରେକୃଷ୍ଣ ମହତାବ ଜଣେ ଦେଶପ୍ରେମୀ ତତ୍ ସହିତ ଜନମହଲରେ ସ୍ନେହର ପାତ୍ର ହୋଇଥିଲେ । ନିଜର କୀର୍ତ୍ତି ଏବଂ କୃତି ଦ୍ୱାରା ଜନମହଲରେ ଏକ ଉଲ୍ଲାସ ଖେଳାଇ ଦେଇଛନ୍ତି ।

ସମସ୍ତ ପ୍ରକାରର ରାଜନୀତିକ କର୍ମଜଞ୍ଜାଳ ମଧ୍ୟରେ ମହତାବ ତାଙ୍କର ସାରସ୍ୱତ କଳାକର୍ମକୁ ଅବ୍ୟାହତ ରଖିଥିଲେ । ପ୍ରକୃତରେ ସେ ଥିଲେ ବିଚିତ୍ର ବିଶ୍ୱକର୍ମା । ଡଃ ମହତାବ ଓଡ଼ିଶାର ଅନ୍ୟତମ ଯଥିତଯଶା ସାହିତ୍ୟିକ ଥିଲେ । ୧୯୨୦ ମସିହାରେ ତାଙ୍କର ସାହିତ୍ୟିକ ଜୀବନର ସୂତ୍ରପାତ ଘଟିଥିଲା । ଓଡ଼ିଆ ଓ ଇଂରାଜୀ ଭାଷାରେ ସେ ମୋଟ୍ ୨୨ଟି ପୁସ୍ତକ ରଚନା କରିଛନ୍ତି । ତନ୍ମଧ୍ୟରେ ପାଞ୍ଚଟି ଉପନ୍ୟାସ, ଗୋଟିଏ ଗଳ୍ପ ସଂକଳନ, ଗୋଟିଏ ଏକାଙ୍କିକା ପ୍ରଭୃତି ଅନ୍ତର୍ଭୁକ୍ତ । ମହାପ୍ରୟାଣର ଅବ୍ୟବହିତ ପୂର୍ବରୁ ରାଜନୈତିକ ସ୍ମୃତିକୁ ପାଥେୟ କରି ସେ ରଚନା କରିଯାଇଛନ୍ତି- 'I while serving my Nation Recollection of a Congress man', ପ୍ରତିଭା, History of Odisha, Beginning of the End ଆଦି ପୁସ୍ତକ ରଚନା କରି ନିଜର ସାରସ୍ୱତ ସର୍ଜନଶକ୍ତିର ପରାକାଷ୍ଠା ପ୍ରତିପାଦନ କରିଛନ୍ତି । ଅନେକ ଉଚ୍ଚମାନର ପତ୍ରପତ୍ରିକା ତାଙ୍କର ଉନ୍ନତ ପରିକଳ୍ପନା ଓ ଉଚ୍ଚ ସମ୍ପାଦନା ରୀତିର ପରିଚୟ ବାଢ଼ିଥାଏ । ସୁଲେଖକ ବିଭୂତି ପଟ୍ଟନାୟକଙ୍କ ଭଶେରେ, "ସେ ଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ଅଭିଭାବକ ।" ରାଜନୀତି, ସାମ୍ବାଦିକା ସହିତ ସେ ସାହିତ୍ୟର ସମନ୍ୱୟ ଘଟାଉଥିଲେ । ବାସ୍ତବରେ ମହତାବଙ୍କର ସାହିତ୍ୟ-ପ୍ରୀତି ଅତୁଳନୀୟ ଥିଲା । 'ପ୍ରଜାତନ୍ତ୍ର' ପରି ଏକ ଦୈନିକ ସମ୍ବାଦପତ୍ର ପ୍ରକାଶନ ତାଙ୍କର ଉନ୍ନତ ସାମ୍ବାଦିକତା ଓ ସଂଗଠନର ଶକ୍ତିର ସ୍ମାରକୀ ।

ମହତାବ ଓଡ଼ିଶା ଇତିହାସର ପ୍ରଣେତା । ଇଂରାଜୀ ଓ ଓଡ଼ିଆ ଉଭୟ ଭାଷାରେ

ତାଙ୍କର ଓଡ଼ିଶା ଇତିହାସ ପ୍ରକାଶିତ । ସାହିତ୍ୟ ଓ ସଂସ୍କୃତିର ବିକାଶରେ ମହତାବଙ୍କ ଅବଦାନ ଅତୁଳନୀୟ । ଜୀବନରେ ସେ ସମାଜସେବା କରିଛନ୍ତି । ଉତ୍କଳକେଶରୀ ମହତାବ ଅନୁରୂପ ଆଦର୍ଶରେ ଅନୁପ୍ରାଣିତ ।

ଡକ୍ଟର ହରେକୃଷ୍ଣ ମହତାବଙ୍କ ଆନ୍ତରିକ ଉଦ୍ୟମରେ ଓଡ଼ିଶାରେ କ୍ରୀଡ଼ାର ବିକାଶ ଆରମ୍ଭ ହୋଇଥିଲା । ବାରବାଟୀ ଷ୍ଟାଡିୟମ ନିର୍ମାଣ ତାଙ୍କରି କଳ୍ପନା ପ୍ରସୂତ । ଓଡ଼ିଶା ଅଲମ୍ପିକ ଆସୋସିଏସନ୍‌ର ସେ ଥିଲେ ପ୍ରତିଷ୍ଠାତା ଓ ଆଜୀବନ ସଭାପତି । ଜୀବନର ପ୍ରତିଟି ମୁହୂର୍ତ୍ତକୁ କର୍ମମୁଖର କରି ଗଢ଼ି ତୋଳି ସେ ଓଡ଼ିଶା ଗଠନ କରିଛନ୍ତି, ଓଡ଼ିଶାର ସାହିତ୍ୟ ଜଗତରେ ତୋଳିଧରିଛନ୍ତି ଝଙ୍କାର । ବିଷୁବ ମଣ୍ଡପର ସାରସ୍ୱତ ମିଳନ କରାଇଛନ୍ତି, ଓଡ଼ିଶାର ସାହିତ୍ୟ ସଂସ୍କୃତି, କ୍ରୀଡ଼ା, ଶିଳ୍ପ, ସଂଗୀତ, କଳା, ରାଜନୀତି ପ୍ରଭୃତି ସକଳ କ୍ଷେତ୍ରରେ ସେ କ୍ରାନ୍ତି ସୃଷ୍ଟି କରିଛନ୍ତି । ଡଃ ମହତାବଙ୍କ ଅବଦାନ ଅତି ମହତ୍‌ତର ଅଟେ । ସେ ନିଜର କୀର୍ତ୍ତି ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ଲାଭ କରିଛନ୍ତି । ହରେକୃଷ୍ଣ ମହତାବ ନିଜର ଅଗାଧ ପ୍ରତିଭା ଦ୍ୱାରା ଜନମହଲରେ ହୋଇଛନ୍ତି ପ୍ରସ୍ଫୁଟିତ । ସେ ଥିଲେ ଚିର ବିଜୟୀ, ପରାଜୟର ଗ୍ଲାନି ତାଙ୍କୁ କେବେହେଲେ ସନ୍ତୁଳିତ କରିପାରିନଥିଲା । ପ୍ରଶାସନିକ ଦାୟିତ୍ୱ ନେଇ ସେ ଅତି ଶୃଙ୍ଖଳାର ସହିତ ସମ୍ପାଦନ କରୁଥିଲେ ।

ସାହିତ୍ୟ ଓ ସଂସ୍କୃତିର ବିକାଶ ଘଟାଇ ଗଗନର ଧ୍ରୁବତାରା ସଦୃଶ ସେ ଚିରଦିନ ନିମନ୍ତେ ପୂଜାସ୍ପଦ । କ୍ରୀଡ଼ାରେ ମଧ୍ୟ ବିକାଶ ଘଟାଇ ଇତିହାସରେ ପଠନୀୟ ହୋଇଛନ୍ତି । ସଦାସର୍ବଦା ନିଜର ବ୍ୟକ୍ତିଗତ ଜୀବନକୁ ଉତ୍କଳମାତାର ଯୋଗ୍ୟ ବରପୁତ୍ର ରୂପେ ସମର୍ପିତ କରି ଦେଶ ପାଇଁ କର୍ମ କରିଛନ୍ତି । ରାଷ୍ଟ୍ରଗଠନ କରିବାରେ ଡକ୍ଟର ମହତାବଙ୍କ ଅବଦାନ ଅତୁଳନୀୟ । ଶାସ୍ତ୍ରବାକ୍ୟ କହିଥାଏ ପରୋପକାର ହେଉଛି ସ୍ୱର୍ଗ ସୋପାନ । ଉପକାର ଦ୍ୱାରା ହିଁ ଅନ୍ୟମାନେ ଉପକୃତ ହୁଅନ୍ତି । ସେହିପରି ମହତାବ ମଧ୍ୟ ଜନଭଗବାନଙ୍କର ପରମ ପୂଜାରୀ ହୋଇଛନ୍ତି ।

ଉତ୍କଳକେଶରୀ ହରେକୃଷ୍ଣ ମହତାବ ବ୍ୟକ୍ତିବିଶେଷ ନଥିଲେ, ସେ ଥିଲେ ଓଡ଼ିଶାର ଏକ ବହୁମୁଖୀ ସ୍ୱୟଂସଂପୂର୍ଣ୍ଣ ଅନୁଷ୍ଠାନ । ତାଙ୍କରି ପ୍ରତ୍ୟେକ କାର୍ଯ୍ୟରେ ସ୍ୱକୀୟତା, ସାହସ ଓ ନିର୍ଭିକତା ପରିସ୍ଫୁଟ ହେଉଥିଲା । ଯଥାର୍ଥରେ ସେ ଥିଲେ ଉତ୍କଳ କେଶରୀ ।

ସେ ଭାରତ ବର୍ଷର ନମସ୍ୟ ଯୋଗ୍ୟପୁତ୍ର, ପରମ ସମ୍ମାନୀୟ ହରେକୃଷ୍ଣ ମହତାବ । ସେ ଚିର ଅମଳିନ ପ୍ରୋଜ୍ୱଳ ଆଲୋକ ଶିଖା । କାଳର ଯାବତୀୟ ଝଡ଼ ସତ୍ତ୍ୱେ ଯାହା ନିର୍ବାଚିତ ନହୋଇପାରେ । ୧୮୯୯ ନଭେମ୍ବର ୨୧ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ ଏବଂ ୧୯୮୭ ଜାନୁଆରୀ ୨ତାରିଖ ୧୧ଟା ୧ ମିନିଟ୍‌ରେ ମହାପ୍ରୟାଣ ଘଟିଥିଲା ତାଙ୍କର । ଓଡ଼ିଶାର ପ୍ରାଣ ମହତାବ ଜଣେ ସୁଯୋଗ୍ୟ କର୍ମବୀର ଓ ସ୍ୱାଭିମାନର ମହାନାୟକ । ମହତାବଙ୍କ ଅବଦାନ ଚିରସ୍ମରଣୀୟ । ବାସ୍ତବରେ ସେ ଥିଲେ ଶତାବ୍ଦୀର ଶ୍ରେଷ୍ଠ ପୁରୁଷ । ତାଙ୍କର ମହାପ୍ରୟାଣ ଇତିହାସର ଇତି ଓ ଏକ ଯୁଗର ଅବସାନର ଦ୍ୟୋତକ । ଜନସାଧାରଣଙ୍କ ନିମନ୍ତେ ତାଙ୍କର ବ୍ୟକ୍ତିତ୍ୱ ସଂପୂର୍ଣ୍ଣ ଭାବେ ଉତ୍ସର୍ଗୀକୃତ ଥିଲା । ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଭାଷାରେ "Harckrushna Mahtab, a truc patriot is that hc loves orissa, but loves India morc, A pratical statesman and a born leader of men." ।

+୨ ଦ୍ୱିତୀୟ ବର୍ଷ, ବେଦବ୍ୟାସ ଆବାସିକ ମହାବିଦ୍ୟାଳୟ,
ବ୍ରହ୍ମପୁର



# ରାଷ୍ଟ୍ର ଗଠନରେ ଡକ୍ଟର ମହତାବଙ୍କ ଅବଦାନ

ରଘୁନାଥ ମୁନୀ

ବିଭିନ୍ନ ସମୟରେ ବିଭିନ୍ନ ରାଜବଂଶ ଅଧୀନରେ ଆମ ପ୍ରଦେଶ ଓଡ଼ିଶା ରହିଆସିଛି ପ୍ରଥମକରି ୧୫୬୮ ମସିହାରେ ଓଡ଼ିଶା ପରାଧୀନ ହୋଇଥିଲା ଏବଂ ଏଥିରେ କ୍ରମେ ମରହଟ୍ଟା, ମୁସଲମାନ ଓ ଇଂରେଜମାନଙ୍କ ଅଧୀନକୁ ଆସିଥିଲା । ବିଂଶଶତକ ଭାରତ ପାଇଁ ଆଣିଦେଇଛି ସ୍ୱାଧୀନତା, ବିଂଶଶତକର ଅନ୍ତିମ ପାଦ ବି ପାଳନ କରିଛି ଭାରତବର୍ଷର ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ । ଯେଉଁମାନେ ଭାରତ ମାତାର ହାତରୁ ପରାଧୀନତାର କଠିନ ଶୃଙ୍ଖଳ ଛିନ୍ନ କରି ତାକୁ ସ୍ୱାଧୀନତାର ମୁକୁଟ ପରିଧାନ କରାଇଲେ, ଯେଉଁମାନେ ଛିନ୍ନମସ୍ତା ଉତ୍କଳ-ଜନନୀଙ୍କର ନବକଳେବର ସୃଷ୍ଟି କଲେ, ଯେଉଁମାନେ ଓଡ଼ିଶାକୁ ଆଧୁନିକ ଓଡ଼ିଶାରେ ପରିଣତ କରିବା ପାଇଁ ଶ୍ରମ-ସାଧନା ଓ ତ୍ୟାଗ ସ୍ୱୀକାର କରିଗଲେ । ସେଇ ଯୋଗ୍ୟତମ ବୀରପୁତ୍ର ଓ ବରପୁତ୍ରମାନଙ୍କ ମଧ୍ୟରେ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ନାମ ଇତିହାସ ନିଶ୍ଚୟ ସ୍ମରଣ କରି ରଖିଥିବ । ଶତାବ୍ଦୀର ଶ୍ରେଷ୍ଠ ଜନନାୟକ ଭାବରେ ତାଙ୍କ ସାଧନା ଓ ସିଦ୍ଧି ପଟାନ୍ତରହୀନ । ସେ ଥିଲେ ଏକାଧାରାରେ ସ୍ୱାଧୀନତା ସଂଗ୍ରାମୀ, ରାଜନୀତିଜ୍ଞ, କୂଟନୀତିଜ୍ଞ, ଐତିହାସିକ ପୁରୁଷ, ଶିଶୁ ସାହିତ୍ୟିକ, ଔପନ୍ୟାସିକ, କବି, ନାଟ୍ୟକାର, ପ୍ରାବନ୍ଧିକ, ନିର୍ଭିକ ଓ ନବ ଉତ୍କଳର ନିର୍ମାଣକର୍ତ୍ତା ।

୧୮୯୯ ନଭେମ୍ବର ୨୧ ଏକ ସ୍ମରଣୀୟ ଦିବସ । ସେଦିନ ବାଲେଶ୍ୱର ଜିଲ୍ଲାର

ଆଗରପଡ଼ା ଗ୍ରାମରେ କୃଷ୍ଣଚରଣ ଦାସଙ୍କ ଗୃହରେ ଜନ୍ମ ନିଅନ୍ତି ଓଡ଼ିଶାର ମୁଖ ଉଜ୍ଜ୍ୱଳକାରୀ ଯୁଗ ପୁରୁଷ ହରେକୃଷ୍ଣ ମହତାବ । ପରବର୍ତ୍ତୀ ସମୟରେ ଅଜା ତଥା ଜମିଦାର ଜଗନ୍ନାଥ ମହତାବଙ୍କ ପୋଷ୍ୟପୁତ୍ର ହୁଅନ୍ତି ଓ ବାଲ୍ୟଶିକ୍ଷା ସମାପ୍ତି ପରେ ମହତାବ ଭଦ୍ରକ ହାଇସ୍କୁଲରେ ଦଶମ ପାସ୍ କରିଥିଲେ । ଏହାପରେ ସେ ୧୯୧୭ରେ ପାଟନା ବିଶ୍ୱବିଦ୍ୟାଳୟରେ ସେ ବିଜ୍ଞାନ ଅଧ୍ୟୟନ କରିଥିଲେ ମାତ୍ର ମଝିରେ ତାଙ୍କୁ ବିଜ୍ଞାନ ଛାଡ଼ି କଳାରେ ପଢ଼ିବାକୁ ହେଲା । ସତର ବର୍ଷ ବୟସରେ ମାଟ୍ରିକ ପାସ କରିବା ପରେ ତାଙ୍କ ପିତା ଆଶା କରିଥିଲେ ଯେ ମହତାବ ଜମିଦାରିର ବୁଝାସୁଝା କରନ୍ତୁ । କାରଣ ହରେକୃଷ୍ଣ ହେବେ ତାଙ୍କର ବିରାଟ ଜମିଦାରିର ଉତ୍ତରାଧିକାରୀ । ମାତ୍ର ହରେକୃଷ୍ଣଙ୍କ ମନରେ ଶିକ୍ଷା ଗ୍ରହଣ ପ୍ରତି ଥିଲା ଅସୀମ ଆଗ୍ରହ । ଉଚ୍ଚଶିକ୍ଷା ଲାଭ କରିବା ନିମିତ୍ତ ପିତାଙ୍କୁ ସେ ବହୁବାର ବୁଝାଇଲେ, ମାତାପିତା ଏଥିରେ ଅସମ୍ମତ ହେବାରୁ ଅନନ୍ୟୋପାୟ ହୋଇ ସବୁରି ଅଲକ୍ଷ୍ୟରେ ଗୃହତ୍ୟାଗ କରି କଟକରେ ପହଞ୍ଚି ରେଭେନ୍ସା କଲେଜରେ ଅଧ୍ୟୟନ ଆରମ୍ଭ କଲେ ।

୧୯୧୭ରେ ହରେକୃଷ୍ଣ ମହତାବ ସୁଭଦ୍ରା ଦେବୀଙ୍କ ପାଣି ଗ୍ରହଣ କରିଥିଲେ । ସ୍ୱାମୀଙ୍କ ସାନ୍ନିଧ ଲାଭ କରି ସୁଭଦ୍ରାଦେବୀ ପ୍ରଭାବିତ ହୋଇଥିଲେ । ସେ ମଧ୍ୟ ସ୍ୱାମୀଙ୍କୁ ଅନୁସରଣ କରି ପବିତ୍ର ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ମହୀୟସୀ ମହିଳା ମନସ୍ୱିନୀ ସୁଭଦ୍ରା ଦେବୀଙ୍କ ପରଲୋକ ୧୯୭୮ରେ ହୋଇଥିଲା । ଗଡ଼ଜାତମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଚାଲୁଥିଲା ବେଳେ ଓଡ଼ିଶାର ଗଡ଼ଜାତମାନଙ୍କରେ ଶାସନ ବ୍ୟବସ୍ଥା କାର୍ଯ୍ୟକାରିତା ତଦନ୍ତ କରିବା ପାଇଁ ୧୯୩୮ ମସିହା ଗଡ଼ଜାତ ତଦନ୍ତ କମିଟି ପୁର୍ନଗଠିତ ହୋଇଥିଲା । ହରେକୃଷ୍ଣ ମହତାବ ଏହାର ଅଧ୍ୟକ୍ଷ ଓ ଏହାର ସମ୍ପାଦକ ଥିଲେ ସାରଙ୍ଗଧର ଦାସ ଓ ଏହାର ଅନ୍ୟ ଦୁଇଜଣ ସଭ୍ୟ ଥିଲେ ଲାଲମୋହନ ପଟ୍ଟନାୟକ ଓ ବଳବନ୍ତ ରାୟ ମେହେଟ୍ଟା । ୧୯୩୯ରେ କମିଟି ତା'ର ବିବରଣୀ ପ୍ରକାଶ କରିଥିଲା । ଏଥିରେ ଗଡ଼ଜାତମାନଙ୍କରେ ଚାଲୁଥିବା କୁଶାସନ ସ୍ପଷ୍ଟ ଚିତ୍ର ସ୍ଥାନ ପାଇଥିଲା ଓ ପ୍ରଜାମାନଙ୍କ ଦୁଃଖ ଦୁର୍ଦ୍ଦଶା ଓ ଗଡ଼ଜାତମାନଙ୍କରେ ଅରାଜକତା ବିଷୟରେ କମିଟି ତାଙ୍କ ବିବରଣୀରେ ଉଲ୍ଲେଖ କରିଥିଲେ । ଗଡ଼ଜାତମାନଙ୍କରେ ବିଧି ବ୍ୟବସ୍ଥାର ପୁନଃ ପ୍ରଚଳନ ଓ ପ୍ରଜାମାନଙ୍କର ଦୁଃଖ ଲାଘବ ନିମନ୍ତେ କେତୋଟି ପ୍ରସ୍ତାବ ମଧ୍ୟ ଦେଇଥିଲେ । ଗଡ଼ଜାତ ଶାସନ ଉପରେ ଅଧୀକ୍ଷଣ କ୍ଷମତା ବ୍ରିଟିଶ ରାଜ ପ୍ରତିନିଧିଙ୍କ ହାତରୁ ଆଣି ଓଡ଼ିଶା ସରକାରଙ୍କ ହାତରେ ନ୍ୟସ୍ତ କରାଯିବାର ଥିଲା କମିଟିର ମୁଖ୍ୟ ପ୍ରସ୍ତାବ । ମହତାବ କମିଟିର ଏହି

ବିବରଣୀକୁ ଓଡ଼ିଶା ସହିତ ଓଡ଼ିଆ ଭାଷାଭାଷୀ ଗଡ଼ଜାତମିଶ୍ରଣର ପ୍ରାଥମିକ ସୂଚନା ବୋଲି ଗ୍ରହଣ କରାଯାଏ । କେବଳ ବିବରଣୀ ପ୍ରସ୍ତୁତ କରି ଓ କିଛି ପ୍ରସ୍ତାବ ଦେଇ ହରେକୃଷ୍ଣ ମହତାବ ନୀରବ ରହିଲେ ନାହିଁ । ୧୯୩୯ ଅଗଷ୍ଟ ମାସରେ ସେ ଭାରତର ଭାଇସରାୟ ଲର୍ଡ ଲିନ୍‌ଲିଥିଗୋଙ୍କୁ ସାକ୍ଷାତ କରି ଓଡ଼ିଶା ଗଡ଼ଜାତ ବ୍ୟବସ୍ଥାକୁ ସୁଧାରିବା ପାଇଁ ଓଡ଼ିଶା ପ୍ରାଦେଶିକ ସରକାରଙ୍କ ହସ୍ତକ୍ଷେପ ଜରୁରୀ ବୋଲି ତାଙ୍କୁ ବୁଝାଇଲେ । ଲିନ୍‌ଲିଥିଗୋ ମହତାବଙ୍କ ଆଭିମୁଖ୍ୟକୁ ସମର୍ଥନ କଲେ ଏବଂ ଓଡ଼ିଶା ପ୍ରଦେଶ ଓ ଗଡ଼ଜାତମାନଙ୍କ ମଧ୍ୟରେ କୌଣସି ଭୌଗୋଳିକ ସୀମା ନାହିଁ ବୋଲି କହିଥିଲେ । ଏହି ବିଷୟରେ ମହତାବ ୧୯୪୨ ମସିହାରେ ସାର ଷ୍ଟାଫୋର୍ଡ କ୍ରିପଥଙ୍କୁ ମଧ୍ୟ ସାକ୍ଷାତ କରିଥିଲେ । ୧୯୪୬ ମସିହା ଏପ୍ରିଲ ୬ତାରିଖରେ ଗଡ଼ଜାତ ମିଶ୍ରଣ ସପକ୍ଷରେ ଯୁକ୍ତି ବାଢ଼ିବା ପାଇଁ ସେ କ୍ୟାବିନେଟ୍ ମିଶନକୁ ସାକ୍ଷାତ କରିଥିଲେ । ସେତେବେଳକୁ ହରେକୃଷ୍ଣ ମହତାବ ଓଡ଼ିଶାରେ ଦ୍ୱିତୀୟ କଂଗ୍ରେସ ମନ୍ତ୍ରିମଣ୍ଡଳର ପ୍ରଧାନମନ୍ତ୍ରୀ ହେବା କଥା ସ୍ଥିର ହୋଇଥାଏ । କ୍ୟାବିନେଟ୍ ମିଶନକୁ ଓଡ଼ିଶା କଂଗ୍ରେସ କମିଟି ତରଫରୁ ଦିଆଯାଇଥିବା ସ୍ମାରକପତ୍ରରେ ଓଡ଼ିଆ ଭାଷାଭାଷୀ ୨୬ଟି ଗଡ଼ଜାତକୁ ଓଡ଼ିଶା ପ୍ରଦେଶ ସହିତ ସର୍ବାନ୍ତ କରଣରେ ମିଶାଇ ଦିଆଯିବା ପାଇଁ ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଥିଲା । କ୍ୟାବିନେଟ୍ ମିଶନ ମଧ୍ୟ ମହତାବଙ୍କର ଏହି ମିଶ୍ରଣର ଆଭିମୁଖ୍ୟ ଦ୍ୱାରା ପ୍ରଭାବିତ ହୋଇଥିଲା । ଏ ବିଷୟରେ ମହତାବ ଗଡ଼ଜାତ ରାଜାମାନଙ୍କ ପାଖକୁ ୧୯୪୬ ମେ ୧୦, ଜୁନ ୨୯ରେ ଦୁଇ ତାରିଖରେ ଦୁଇଥର ଚିଠି ଲେଖିଥିଲେ, ମହତାବଙ୍କର ଗଡ଼ଜାତ ମିଶ୍ରଣ ପ୍ରସ୍ତାବ ରାଜାମାନଙ୍କର ପସନ୍ଦ ହେଲାନାହିଁ ଓ ସେମାନେ ପ୍ରକାଶ୍ୟରେ ଏହାର ବିରୋଧ କଲେ । କିନ୍ତୁ କଳାହାଣ୍ଡିର ମହାରାଜା ହରେକୃଷ୍ଣ ମହତାବଙ୍କୁ ପର୍ଶୁରାମର ଆଖ୍ୟା ଦେଇଥିଲେ । ମିଶ୍ରଣ ଶବ୍ଦଟି ଓଡ଼ିଶା ଗଡ଼ଜାତ ରାଜାମାନଙ୍କ ପାଇଁ ଶ୍ରୁତିକଟୁ ଥିଲା । ମହତାବଙ୍କର ଏହି ଯୋଜନାକୁ ପଣ୍ଡ କରିବା ପାଇଁ ଓଡ଼ିଶା ଓ ଛତିଶଗଡ଼ର ୩୯ଟି ଦେଶୀୟ ରାଜା ପୂର୍ବାଞ୍ଚଳ ଗଡ଼ଜାତ ସଂଘ ନାମରେ ଏକ ସଂଗଠନ ଆରମ୍ଭ କଲେ । ଏହା ୧୯୪୭ ଅଗଷ୍ଟ ୦୧ରୁ କାର୍ଯ୍ୟକାରୀ ହେଲା ।

୧୯୪୭ ଅଗଷ୍ଟ ୧୦ତାରିଖ ଦିନ ପ୍ରଜାମଣ୍ଡଳର ଏକ ସମ୍ମିଳନୀ କଟକଠାରେ ଛତିଶଗଡ଼ ଓ ଓଡ଼ିଶାରେ ଥିବା ଗଡ଼ଜାତମାନଙ୍କରୁ ଅନେକ ପ୍ରଜା ଯୋଗ ଦେଇଥିଲେ । ଏହାର ପାଞ୍ଚଦିନ ପରେ ଭାରତ ସ୍ୱାଧୀନ ହେବାର ଥିଲା । ଏହି ପୃଷ୍ଠଭୂମିରେ ମୁଖ୍ୟତଃ

ଗଡ଼ଜାତମାନଙ୍କର ଭବିଷ୍ୟତ ସମ୍ବନ୍ଧରେ ଆଲୋଚନା ହୋଇଥିଲା । ଓଡ଼ିଶାରେ ଥିବା ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହିତ ମିଶାଇବା ଥିଲା ଏହାର ମୁଖ୍ୟ ପ୍ରସ୍ତାବ । ସ୍ୱାଧୀନତା ପ୍ରାପ୍ତି ପରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ଓଡ଼ିଆ ଭାଷାଭାଷୀ ଗଡ଼ଜାତମାନଙ୍କର ରାଜାମାନଙ୍କୁ ୧୯୪୭ ଅକ୍ଟୋବର ୧୬ତାରିଖରେ ସମ୍ବଲପୁରରେ ଅନୁଷ୍ଠିତ ହେବାକୁ ଥିବା ସମ୍ମିଳନୀକୁ ନିମନ୍ତ୍ରଣ କଲେ । ଓଡ଼ିଶାର ଶାନ୍ତି ଶୃଙ୍ଖଳା, ପ୍ରଶାସନିକ ସୁବିଧା ଓ ସାମୂହିକ ପ୍ରଗତି ପାଇଁ ଦେଶୀୟ ରାଜ୍ୟଗୁଡ଼ିକ ସର୍ବନ୍ତୀକରଣରେ ଓଡ଼ିଶା ପ୍ରଦେଶ ସହ ମିଶିଯିବା ଉଚିତ ବୋଲି ଏହି ସମ୍ମିଳନୀରେ ମହତାବ ଯୁକ୍ତି ଉପସ୍ଥାପନ କରିଥିଲେ । କିନ୍ତୁ ଓଡ଼ିଶା ସହିତ ମିଶିବାକୁ ମହତାବଙ୍କ ନିବେଦନ ପ୍ରତି ରାଜାମାନେ କର୍ଣ୍ଣପାତ କଲେନାହିଁ । ବୋଧହୁଏ ପ୍ରଜାମଣ୍ଡଳର ସେହି ସମୟରେ ଅପରିବର୍ତ୍ତିତ ଆହ୍ୱାନ ସମ୍ପର୍କରେ ସେମାନେ ଠିକ୍ କଳନା କରିଥିଲେ । ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହିତ ମିଶଇଯିବା ପରେ ସର୍ଦ୍ଦାର ପଟେଲ କହିଥିଲେ ଯେ ମୁଁ ଖୁସି ଯେ ହରେକୃଷ୍ଣ ମହତାବଙ୍କ ସ୍ୱପ୍ନକୁ ସାକାର କରିବାରେ ତାଙ୍କୁ ସାହାଯ୍ୟ କରିବାରେ ସଫଳ ହୋଇଛି କିନ୍ତୁ ଆହୁରି ଅଧିକ ଖୁସି ଥିଏପାଇଁ ଯେ ଓଡ଼ିଶା ଭଳି ପଛୁଆ ରାଜ୍ୟ ଅବଶିଷ୍ଟ ଭାରତକୁ ତା' ପଥର ଅନୁଗାମୀ କରିବାରେ ସାହାଯ୍ୟ କରିଛି । ତତ୍‌ସହିତ ଆଧୁନିକ ଓଡ଼ିଶାର ନବନିର୍ମାତାଙ୍କ ମଧ୍ୟରେ ମହତାବ ଥିଲେ ଜଣେ ସ୍ୱତନ୍ତ୍ର କର୍ମୀ । ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ହିଁ ଗଠିତ ହୋଇଥିଲା, ଭୁବନେଶ୍ୱରରେ ନୂତନ ରାଜଧାନୀ । ଓଡ଼ିଶାର ଉନ୍ନତି ପାଇଁ ସମ୍ବଲପୁରଠାରେ ସଂସ୍ଥାପିତ ହେଲା ହୀରାକୁଦ ଭଳି ବୃହତ୍ତମ ନଦୀବନ୍ଧ ଯୋଜନା । ଓଡ଼ିଶା ଶିଳ୍ପର ଉନ୍ନତି ପାଇଁ ରାଉରକେଲାଠାରେ ଇସ୍ପାତ କାରଖାନା, ତାଙ୍କ ଚିନ୍ତାର ସଫଳ ରୂପାୟନ । ଓଡ଼ିଶା ମିଶ୍ରଣ ଓ ନବଗଠିତ ଓଡ଼ିଶାର ନୂତନ କଳେବର ପ୍ରସ୍ତୁତି ତଥା ଗଡ଼ଜାତ ମିଶ୍ରଣ ଇତ୍ୟାଦି ଅନେକ ଐତିହାସିକ କାର୍ଯ୍ୟ ତାଙ୍କ ସାହାସିକତାର ସଫଳତା ପ୍ରକାଶ କରିଥାଏ । ସମସ୍ତ ପ୍ରକାରର ରାଜନୀତିକ କର୍ମଜଞ୍ଜାଳ ମଧ୍ୟରେ ମହତାବ ତାଙ୍କର ସାରସ୍ୱତ କଳାକର୍ମକୁ ଅବ୍ୟାହତ ରଖିଥିଲେ । ପ୍ରକୃତରେ ସେ ଥିଲେ ବିଚିତ୍ର ବିଶ୍ୱକର୍ମା । ସାହିତ୍ୟ ସ୍ରଷ୍ଟା ଭାବରେ ସେ ଗଳ୍ପ, ଉପନ୍ୟାସ, ନାଟକ, କବିତା, ପ୍ରବନ୍ଧ, ଆଲୋଚନା, ଜୀବନୀ ଇତ୍ୟାଦି ଲେଖି ଯଶସ୍ୱୀ ହୋଇଛନ୍ତି । ସେ ଆପେ ଲେଖନ୍ତି ଓ ଅନ୍ୟମାନଙ୍କୁ ଲେଖକ କରି ଗଢ଼ି ତୋଳିବାରେ ପାହାନ୍ତି ଅପାର ଆମୋଦ । ପଲାସୀ ଅବସାନେ ସାଧନାର ପଥେ, ଟାଉଟର, ପ୍ରତିଭା, ଗାଁ ମଜଲିସ, ଦଶବର୍ଷର ଓଡ଼ିଶା ଇତ୍ୟାଦି ତାଙ୍କର ଓଡ଼ିଆ ସାହିତ୍ୟକୁ

ବିଶେଷ ଅବଦାନ । ଓଡ଼ିଶାରେ ସେ 'ଝଙ୍କାର' ନାମକ ସାହିତ୍ୟପତ୍ର ପ୍ରକାଶ କରି ଅନେକ ଲେଖକ ଗଢ଼ି ପାରିଛନ୍ତି । 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଗଠନ କରି ସେ ପ୍ରତିବର୍ଷ ତିନିଦିନ ଧରି ବିଷୁବ ମିଳନ ଭଳି ଏକ ବିରାଟ ସାରସ୍ୱତ ମେଳା ଅନୁଷ୍ଠାନ କରି ଆସିଛନ୍ତି । 'ମୀନାବଜାର', 'ପ୍ରଜାତନ୍ତ୍ର ସାପ୍ତାହିକୀ', 'ପ୍ରତିଭା' ଓ 'ହୀରାଖଣ୍ଡ' ପରି ଅନେକ ଉଚ୍ଚମାନର ପତ୍ରପତ୍ରିକା ତାଙ୍କର ଉନ୍ନତି ପରିକଳ୍ପନା ଓ ଉଚ୍ଚ ସମ୍ପାଦନା ରୀତିର ପରିଚୟ ବାଢ଼ିଥାଏ । 'ପ୍ରଜାତନ୍ତ୍ର' ପରି ଏକ ଦୈନିକ ସମ୍ବାଦପତ୍ର ପ୍ରକାଶନ ତାଙ୍କର ଉନ୍ନତ ସାମ୍ବାଦିକା ଓ ସଂଗଠନ ଶକ୍ତିର ସ୍ମାରକୀ । ମହାପ୍ରୟାଣର ଅବ୍ୟବହିତ ପୂର୍ବରୁ ସେ ରଚନା କରିଛନ୍ତି - ହ୍ୱାଇଲ୍ ସର୍ଭିଙ୍ଗ ମାଇ ନ୍ୟାସନ ରିକଲେକ୍ସନ୍ ଅଫ୍ ଏ କଂଗ୍ରେସ ମ୍ୟାନ୍, ସାଧନାର ପଥେ, ପଲାସୀ ଅବସାନେ ପ୍ରତିଭା ଓ ହିଷ୍ଟ୍ରି ଅଫ୍ ଓଡ଼ିଶା, ବିଗନିଙ୍ଗ ଅଫ୍ ଦ ଏଣ୍ଡ ଇତ୍ୟାଦି ରଚନା କରିଥିଲେ ଯାହା ରାଷ୍ଟ୍ରଗଠନ ଦିଗରେ ସହାୟକ ହୋଇଥିଲା ।

ହରେକୃଷ୍ଣ କୈଶୋରରୁ ଥିଲେ ନେତା । ଆଗରପଡ଼ା ଜମିଦାରିର ପ୍ରାଚୁର୍ଯ୍ୟ ଓ ବିଳାସକୁ ତୁଚ୍ଛ କରି ଅଧ୍ୟୟନ କରିବା ସମୟରେ ଦେଶର ଅବସ୍ଥା ସହିତ ସେ ହେଲେ ଅବିହତ । ସେତେବେଳେ ସାରା ଦେଶରେ ଆରମ୍ଭ ହୋଇଥାଏ ସ୍ୱାଧୀନତା ସଂଗ୍ରାମ । ୧୯୨୧ ମସିହାରେ ମହାତ୍ମା ଗାନ୍ଧୀଙ୍କର ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସର ବିଭିନ୍ନ ସମୟରେ ଅସହଯୋଗ ଆନ୍ଦୋଳନ ଚାଲୁ ରଖିଥାଏ । ଗାନ୍ଧିଜୀ ଏଥର ଓଡ଼ିଶାର ପଦଯାତ୍ରା ଆରମ୍ଭ କରିଥିଲେ । ମହତାବ ଦେଶର ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ଉଚ୍ଚଶିକ୍ଷାକୁ ତୁଚ୍ଛ କରି, ଦେଶକାମରେ ନିଜକୁ ସାମିଲ କଲେ । ତାଙ୍କରି ନେତୃତ୍ୱରେ ସେ କଟକରେ ବିଭିନ୍ନ ସଭାସମିତି କଲେ । କଂଗ୍ରେସର ବାଣୀ ପ୍ରଚାର କରି ଲୋକଙ୍କ ଭିତରେ ଜାତୀୟ ଭାବନା ସୃଷ୍ଟି କଲେ । ଏଇ କାମରେ ତାଙ୍କୁ କେତେକ ଉତ୍ସାହିତ କରିଥିବାବେଳେ, କେତେକ ତାଙ୍କୁ ନିରୁତ୍ସାହିତ କରିଥିଲେ । ତାଳି ଓ ଗାଳି ପ୍ରତି ଦୃଷ୍ଟି ନଦେଇ ସେ ଦେଶ କାମରେ ଆଗଭର ହୋଇ ଉଠିଲେ । ତାଙ୍କ ଯୁବ ସୁଲଭ ଉଦାମ ଶକ୍ତିକୁ ଦେଶ ଜନନୀର ସେବାରେ ନିୟୋଗ କଲେ ।

ଭାରତୀୟ ମୁକ୍ତି ସଂଗ୍ରାମର ମହାସେନାନାୟକ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଅନେକରେ ଜାତୀୟବାଦୀ ଛାତ୍ରମାନଙ୍କ ଭଳି ମହତାବ ମଧ୍ୟ ଅଧ୍ୟୟନ ସମାପ୍ତ ନକରି ଶିକ୍ଷାନୁଷ୍ଠାନ ତ୍ୟାଗ ହେଲେ କାରାବାସୀ । କଂଗ୍ରେସରେ ଯୋଗଦେଇ ଆନ୍ଦୋଳନ କାର୍ଯ୍ୟ

କରିଥିଲେ । ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲି ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କଲେ । ଉତ୍କଳମଣି ଗୋପବନ୍ଧୁ ଦାସ ସେତେବେଳେ ଓଡ଼ିଶାର ଅନ୍ୟତମ ନେତା ଥିଲେ । ମହତାବ ତାଙ୍କୁ ବିଭିନ୍ନ କାର୍ଯ୍ୟରେ ସହାୟତା କରିଥିଲେ । ସ୍ୱଦେଶ ଆନ୍ଦୋଳନର ବାଣୀକୁ ସେ ଗ୍ରାମ୍ୟ ଭୂମିରେ ବୁଲି ବୁଲି ପ୍ରଚାର କଲେ । ଭଦ୍ରକ ଓ ବାଲେଶ୍ୱରରେ ସ୍ଥାପିତ ହେଲା ସ୍ୱରାଜ୍ୟ ଆଶ୍ରମ । ଏଇଠାରେ ଚାଲିଲା ସୂତାକଟା, ଲୁଗାବୁଣା । ବାଲେଶ୍ୱରକୁ ବିଦେଶରୁ ଆସୁଥିବା ଲୁଗାଗାଡ଼ି ଆଗରେ ଶୋଇ ରହି ସେ ପ୍ରତିବାଦ କଲେ । ତେଣୁ ଗୋରା ସରକାର ତାଙ୍କୁ ବନ୍ଦୀ କରି କାରାଗାରକୁ ନେଇଗଲେ । ଏଥିରେ ସେ କିନ୍ତୁ ପାଇଲେ ଅସୀମ ଆନନ୍ଦ ।

ଯେଉଁ ମହତାବ ବିଳାସର ରାଜଭୋଗକୁ ସ୍ୱ-ଇଚ୍ଛାରେ ତ୍ୟାଗ କରିଥିଲେ, ସେ ଆଜି ଦେଶ ପାଇଁ କାର୍ଯ୍ୟକରି ହେଲେ କାରାବାସୀ । ବାଲେଶ୍ୱରରୁ ତାଙ୍କ ନେତୃତ୍ୱ ସାରା ଓଡ଼ିଶାକୁ ଦେଶ ପାଇଁ କାର୍ଯ୍ୟକରି ପରିବ୍ୟାପ୍ତ ହୋଇଥିଲା ଏବଂ ଏଇ କ୍ଷେତ୍ରରେ କାରାବାସ କରିଥିଲେ ହସିହସି । ୧୯୨୧, ୧୯୨୭, ୧୯୩୦, ୧୯୩୨ ଏବଂ ୧୯୪୨ ମସିହାରେ ସେ ଦେଶ ପାଇଁ କାମରେ ବହୁବାର କାରାବରଣ କରିଥିଲେ । ସେଇ କାରାବାସରେ ତାଙ୍କୁ ମିଳୁଥିଲା ଅସାମାନ୍ୟ ଆନନ୍ଦ । ରାଜନୀତିକ ବନ୍ଦୀ ଭାବରେ କାରାଗାରରେ ରହି ମଧ୍ୟ ଦେଶ କଥା ଚିନ୍ତା କରୁଥିଲେ । କର୍ମୀ ଗୋପବନ୍ଧୁଙ୍କ ପରି ସେ କାରାବାସ ମଧ୍ୟରେ ସାହିତ୍ୟ ଚର୍ଚ୍ଚା କରୁଥିଲେ ।

ଜାତୀୟ କଂଗ୍ରେସରେ ଯୋଗଦେବା ପରଠାରୁ ମହତାବଙ୍କ ମହାନତା ଅଧିକତର ଭାବରେ ହେଲା ପରିବ୍ୟାପ୍ତ । ଏତେବେଳେ ସେ ହେଲା ଜଣେ ପ୍ରଥମ ଶ୍ରେଣୀର ନେତା, ତାଙ୍କରି ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ତୀବ୍ର ରୂପ ଧାରଣ କରିଥିଲା । ସେ ନିଜର କର୍ମଠତା ପାଇଁ ସାଜିଲେ କେନ୍ଦ୍ର କଂଗ୍ରେସର କମିଟିର ସଦସ୍ୟ, ରାଜ୍ୟ କଂଗ୍ରେସ କମିଟିର ସଭାପତି, ନିଖିଳ ଭାରତୀୟ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ । ଭାରତବର୍ଷ ସ୍ୱାଧୀନ ହେଲା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା, ମହତାବ ହେଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । କେନ୍ଦ୍ରସରକାରରେ ସେ ଶିଳ୍ପ ମନ୍ତ୍ରୀ ହୋଇଥିଲେ ଏବଂ କିଛିଦିନ ଧରି ମଧ୍ୟ ବମ୍ବେର ରାଜ୍ୟପାଳ ହୋଇଥିଲେ । ସେ ଥିଲେ ଚିର ବିଜୟୀ, ପରାଜୟର ଗ୍ଲାନି ତାଙ୍କୁ କେବେହେଲେ ସନ୍ତୁଳିତ କରିପାରିନଥିଲା । ପ୍ରଶାସନିକ ଦାୟିତ୍ୱ ନେଇ ଏହାକୁ ସେ ଅତି ଶୃଙ୍ଖଳାର ସହିତ ସମ୍ପାଦନ କରୁଥିଲେ ।

ଓଡ଼ିଶାର ବରେଣ୍ୟ ଜନନାୟକ, ଜନଭଗବାନଙ୍କର ପରମପୂଜାରୀ ଜାତି କର୍ଣ୍ଣଧାର ଉତ୍କଳ କେଶରୀ ଡକ୍ଟର ମହତାବ ୧୯୮୭ ଜାନୁଆରୀ ୦୨ତାରିଖ ଦିନ ୧୧ଟା ବାଜି ୧ ମିନିଟ୍ ସମୟରେ ପରଲୋକ ପ୍ରାପ୍ତ ହୋଇଥିଲେ । ତାଙ୍କର ବିୟୋଗ ଦଳଗତ ନିର୍ବିଶେଷରେ ସମସ୍ତଙ୍କ ଅନ୍ତରକୁ ସ୍ପର୍ଶ କରିଥିଲା । ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ଡକ୍ଟର ବି.ଏନ.ପାଣ୍ଡେ ଗଭୀର ଶୋକ ପ୍ରକାଶ କରି କହିଥିଲେ "ଆଧୁନିକ ଓଡ଼ିଶାର ନିର୍ମାତା ଭାବେ ତାଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।" ଲୋକସେବକ ମଣ୍ଡଳର ସଭାପତି ଦୈନିକ ସମ୍ବାଦପତ୍ର 'ସମାଜ'ର ସମ୍ପାଦକ ରାଧାନାଥ ରଥଙ୍କ ଭାଷାରେ ମହତାବଙ୍କ ବିୟୋଗ ଆମ ରାଜ୍ୟ ଓ ଦେଶ ପକ୍ଷରେ ସବୁଠାରୁ ଦୁଃଖପୂର୍ଣ୍ଣ ଘଟଣା ।

ଡଃ ହରେକୃଷ୍ଣ ମହତାବ ବ୍ୟକ୍ତିବିଶେଷ ନଥିଲେ ସେ ଥିଲେ ଓଡ଼ିଶାର ଏକ ବହୁମୁଖୀ ଅନୁଷ୍ଠାନ । ତାଙ୍କରି ପ୍ରତ୍ୟେକ କାର୍ଯ୍ୟରେ ସ୍ୱକୀୟତା, ସାହାଯ୍ୟ ଓ ଉତ୍କଳକେଶରୀ ଓଡ଼ିଶାର ପ୍ରାଣ ମହତାବଙ୍କଠାରେ ପ୍ରସ୍ଫୁଟିତ ହେଉଥିଲା । ଯଥାର୍ଥରେ ସେ ଥିଲେ ଉତ୍କଳ କେଶରୀ । ଓଡ଼ିଶାର ପ୍ରାଣ ମହତାବ ଥିଲେ ଜଣେ ସୁଯୋଗ୍ୟ କର୍ମବୀର ଓ ସ୍ୱାଭିମାନର ମହାନାୟକ । ଓଡ଼ିଶା ପ୍ରତି ତାଙ୍କ ଅବଦାନ ଚିରସ୍ମରଣୀୟ । ବାସ୍ତବରେ ସେ ଥିଲେ ଶତାବ୍ଦୀର ଶ୍ରେଷ୍ଠ ପୁରୁଷ । ତାଙ୍କର ତିରୋଧାନ ଇତିହାସରେ ଇତି ଓ ଏ ଯୁଗର ଅବସାନର ଦ୍ୟୋତକ । ଜନସାଧାରଣଙ୍କ ନିମନ୍ତେ ତାଙ୍କ ଜୀବନ ସଂପୂର୍ଣ୍ଣ ଭାବେ ଉତ୍ସର୍ଗୀକୃତ ଥିଲା । ବ୍ୟକ୍ତି ରୂପେ ଜନ୍ମ ନେଇ ମହତାବ ଶେଷବେଳକୁ ମହାନ ଅନୁଷ୍ଠାନରେ ପରିଣତ ହୋଇଯାଇଛନ୍ତି । ଜୀବନର ପ୍ରତିଟି ମୁହୂର୍ତ୍ତ କର୍ମମୁଖର କରି ଗଢ଼ିଛିଲି ସେ ଓଡ଼ିଶା ଗଠନ କରିଛନ୍ତି; ପ୍ରଜାତନ୍ତ୍ର ଗଢ଼ିଛନ୍ତି, ଓଡ଼ିଶାର ସାହିତ୍ୟ ଜଗତରେ ତୋଳି ଧରିଛନ୍ତି ଝଙ୍କାର । ବିଷୁବ ମଣ୍ଡପର ସାରସ୍ୱତ ମିଳନ କରାଇଛନ୍ତି, ଓଡ଼ିଶାର ସାହିତ୍ୟ, ସଂସ୍କୃତି, କ୍ରୀଡ଼ା, ଶିଳ୍ପ, ନାଟକ, ସଂଗୀତ, କଳା, ରାଜନୀତି ପ୍ରଭୃତି ସକଳ କ୍ଷେତ୍ରରେ ସେ କ୍ରାନ୍ତି ସୃଷ୍ଟି କରିଛନ୍ତି । ୧୯୮୭ ଜାନୁଆରୀ ୦୨ତାରିଖରେ ତାଙ୍କ ବିୟୋଗ ଓଡ଼ିଶାରେ ଗୋଟାଏ ଗାନ୍ଧୀବାଦୀ କର୍ମଯୁଗର ଅବସାନ ଘଟାଇଲା ।



# ରାଷ୍ଟ୍ର ଗଠନରେ ଡକ୍ଟର ମହତାବଙ୍କ ଅବଦାନ

## ନରସିଂହ ପ୍ରସାଦ ହୋତା

ପରମ୍ପରା ତଥା ସଂସ୍କୃତିରେ ପରିପୂର୍ଣ୍ଣ ଓଡ଼ିଶା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ବିଭିନ୍ନ ସମୟରେ ବିଭିନ୍ନ ରାଜବଂଶ ଅଧୀନରେ ଓଡ଼ିଶା ତାହାର ଗୌରବୋଜ୍ଜ୍ୱଳ ଇତିହାସ ବଜାୟ ରଖିଥିଲା । ମଧ୍ୟଯୁଗୀୟ ଓଡ଼ିଶା ମହାନ୍ ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ନରପତିଙ୍କ କୃତିତ୍ୱର ଉଜ୍ଜ୍ୱଳ ଥିଲା । ସାରାଭାରତରେ ମୁସଲମାନ ଶାସନର ପ୍ରାଧାନ୍ୟ ଥିଲାବେଳେ ଓଡ଼ିଶାର ହିନ୍ଦୁରାଜାମାନେ ଉତ୍କଳୀୟ ସଭ୍ୟତା ଓ ସଂସ୍କୃତିର ଉତ୍କର୍ଷ ସାଧନ କରିଥିଲେ । ୧୫୬୮ ମସିହାରେ ଓଡ଼ିଶା ତା'ର ସ୍ୱାଧୀନତା ହରାଇଥିଲା । ପ୍ରଥମେ ଆଫଗାନ ଓ ପରେପରେ ମୋଗଲ ଓ ମରହଟ୍ଟା ଶାସକ ରାଜତ୍ୱ କଲେ । ୧୮୦୩ ମସିହାରେ ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେବା ପରେ ଓଡ଼ିଶାର ଶୋଚନୀୟ ଅବସ୍ଥା ଆରମ୍ଭ ହେବାକୁ ଲାଗିଲା । ଓଡ଼ିଶାରେ ଇଂରେଜମାନେ ଶାସନ ବ୍ୟବସ୍ଥା ଆରମ୍ଭ କଲାପରେ ଏଠାରେ ପାଶ୍ଚାତ୍ୟ ଶିକ୍ଷା ଓ ଧର୍ମଧାରାର ପ୍ରବାହ ଆରମ୍ଭ ହେଲା । ଏହା ପରେ ପରେ ୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷର ଭୟାବହତା ଓଡ଼ିଶାର ସାମାଜିକ, ଅର୍ଥନୈତିକ ଅବସ୍ଥାକୁ ଶୋଚନୀୟ କଲା । ଏଥିସହିତ ଇଂରେଜମାନଙ୍କ ଅତ୍ୟାଚାରକୁ ଓଡ଼ିଶାକୁ ବିପଦର କଳାବାଦଲ ଛାଇଗଲା । ଏହାର ପରବର୍ତ୍ତୀ ଅବସ୍ଥାରେ ବିଂଶ ଶତାବ୍ଦୀ ଭାରତ ପାଇଁ ଆଣିଦେଇଥିଲା ସ୍ୱାଧୀନତା । ବିଂଶ ଶତାବ୍ଦୀର ଅନ୍ତିମପାଦ ବି ପାଳନ କରିଥିଲା ଭାରତର ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ । ଯେଉଁମାନେ ଛିନ୍ନମସ୍ତା, ଉତ୍କଳଜନନୀଙ୍କର ନବକଳେବର ସୃଷ୍ଟି କଲେ, ଯେଉଁମାନେ

ଓଡ଼ିଶାକୁ ଆଧୁନିକ ଓଡ଼ିଶାରେ ପରିଣତ କରିବା ପାଇଁ ଶ୍ରମ ସାଧନା ଓ ତ୍ୟାଗ ସ୍ୱୀକାର କରିଗଲେ, ସେମାନଙ୍କର ତ୍ୟାଗ, ତିତିକ୍ଷା ଓ ସେବା ଜାତି ତଥା ଦେଶ ପାଇଁ ଅବିସ୍ମରଣୀୟ ହେଇ ରହିବ । ସେଇଭଳି ଜଣେ ମହାନ୍ ବ୍ୟକ୍ତିତ୍ୱ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ୧୯୨୧ରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ସେ କଲେଜ ପାଠପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ ।

ଡକ୍ଟର ମହତାବଙ୍କ କର୍ମମୟ ଜୀବନ ସମୁଦ୍ର ପରି ଦିଗନ୍ତପ୍ରସାରୀ । ୧୯୨୧ରେ ଜାତୀୟ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସେ ଅଧ୍ୟୟନରୁ ବିରତ ହେଲେ । ଓଡ଼ିଶାରେ ଗାନ୍ଧିଜୀଙ୍କ ସହ ପଦଯାତ୍ରାରେ ମହତାବ ନିବିଡ଼ ଭାବରେ ସଂପୃକ୍ତ ହୋଇଥିଲେ । ଫଳରେ ଦୁଇ ସପ୍ତାହ ପାଇଁ ତାଙ୍କୁ କାରାବରଣ କରିବାକୁ ପଡ଼ିଲା । ଏହିଠାରୁ ତାଙ୍କର ସ୍ୱାଧୀନତା ସଂଗ୍ରାମୀ ଭାବେ ସଂଘର୍ଷ ଓ ସଂଘାତପୂର୍ଣ୍ଣ କର୍ମମୟ ଜୀବନର ଅୟମାରମ୍ଭ ହେଲା । ୧୯୪୨ରେ ଭାରତଛାଡ଼ ଆନ୍ଦୋଳନରେ ବନ୍ଦୀ ହୋଇ ଅହମ୍ମଦନଗର ଦୁର୍ଗରେ ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ, ଆଚାର୍ଯ୍ୟ କୃପାଳିନୀ ଆଦି ବିଶିଷ୍ଟ ବ୍ୟକ୍ତିମାନଙ୍କ ସାନ୍ନିଧ୍ୟ ଲାଭ କରିଥିଲେ । ରଣପୁରର ବେଜଲଗେଟ୍ ହତ୍ୟାକାଣ୍ଡ ସହିତ ବ୍ରିଟିଶ ସରକାର ତାଙ୍କୁ ସଂପୃକ୍ତ କରି ତାଙ୍କ ବିରୋଧରେ ଅଦାଲତରେ ଅଭିଯୋଗ ଆଗତ କରିଥିଲେ । ମାତ୍ର ଗାନ୍ଧିଜୀଙ୍କ ହସ୍ତକ୍ଷେପ ଯୋଗୁଁ ଏଭଳି ଏକ ନିଶ୍ଚିତ ଫାଶୀଦଣ୍ଡରୁ ହରେକୃଷ୍ଣ ମହତାବ ଅଳ୍ପକେ ରକ୍ଷା ପାଇଥିଲେ । ସେହିସମୟରେ ଗୋପବନ୍ଧୁ ଓଡ଼ିଶାର ଅନ୍ୟତମ ଜନନାୟକ ଥିଲେ । ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ମହତାବ ରୋଗୀସେବା, ତଥା ଦେଶସେବାରେ ନିୟୋଜିତ ରହିଥିଲେ । ୧୯୨୪ରେ ଡକ୍ଟର ମହତାବ ବାଲେଶ୍ୱର ଜିଲ୍ଲାପରିଷଦ ଅଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଥିଲେ । ଏହିଠାରୁ ସେ ଲୋକ ପ୍ରତିନିଧିତ୍ୱ ସୁଯୋଗ ଲାଭ କରିଥିଲେ । ୧୯୩୧ରେ ଜାତୀୟ କଂଗ୍ରେସର ପୁରୀ ଅଧିବେଶନ ଆୟୋଜନରେ ସକ୍ରିୟ ଅଂଶ ଗ୍ରହଣ କରି ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଦୃଢ଼ ଆକର୍ଷଣ କରିଥିଲେ ।

ରାଜ୍ୟ କଂଗ୍ରେସର ସଭାପତି ରୂପେ ସେ ୧୯୩୬ରେ ନିର୍ବାଚିତ ହେଲେ । ପୁଣି ୧୯୩୮ରେ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସମିତି ସଭ୍ୟ ରୂପେ ମନୋନୀତ ହୋଇଥିଲେ । ଏହି ସମୟରେ ଓଡ଼ିଶାରେ ଗଡ଼ଜାତ ସମସ୍ୟାର ସମାଧାନ ନିମନ୍ତେ ମହତାବ ଅଣ୍ଟା ଭିଡ଼ିଥିଲେ । କଟକରେ ଆୟୋଜିତ ସମ୍ମିଳନୀରେ ମିଶାଇବା ପାଇଁ ୧୯୪୭ ଅଗଷ୍ଟ ୧୦ରେ ମହତାବ ପ୍ରସ୍ତାବ ଦେଇଥିଲେ। ଏକ ସ୍ୱତନ୍ତ୍ର ଓଡ଼ିଶା

ଗଠନର ରୂପରେଖର କଳ୍ପନା ସେ ପ୍ରସ୍ତୁତ କରିଥିଲେ । ପରେ ନିଜେ ଓଡ଼ିଶାର ନେତୃତ୍ୱ ନେବା ପାଇଁ ୧୯୪୬ରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ପରେ ମୁଖ୍ୟମନ୍ତ୍ରୀ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ । ୧୯୫୦ରୁ ୧୯୫୨ ପର୍ଯ୍ୟନ୍ତ କେନ୍ଦ୍ର ଶିଳ୍ପ, ବାଣିଜ୍ୟ ଓ ଯୋଗାଣମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କରି ଭାରତର ଅନେକ ଉନ୍ନତି ସାଧନ କରିଥିଲେ । ୧୯୫୨ରୁ ୧୯୫୪ ପର୍ଯ୍ୟନ୍ତ ସଂସଦରେ ଜାତୀୟ କଂଗ୍ରେସର ସାଧାରଣ ସଂପାଦକ ରୂପେ କାର୍ଯ୍ୟଭାର ବୁଝିଥିଲେ । ୧୯୫୬ରୁ ୧୯୬୧ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଓଡ଼ିଶାର ତୁଲାଇଥିଲେ । ୧୯୬୨ରେ ଲୋକସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଉପଦେଷ୍ଟ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କର ଉଦ୍ୟମ ବଳରେ ଓଡ଼ିଶାର ଗୌରବ ତଥା ସମ୍ବଲପୁରର ଶୋଭାବର୍ଦ୍ଧନ କରୁଥିବା ତଥା ଓଡ଼ିଶାକୁ ବୈଦ୍ୟୁତିକ, ଜଳସେଚନ କ୍ଷେତ୍ରରେ ସାହାଯ୍ୟ କରୁଥିବା ହୀରାକୁଦ ନଦୀବନ୍ଧ ପ୍ରତିଷ୍ଠା କରାଇଥିଲେ । ଏହିଭଳି କର୍ମ ତାଙ୍କୁ ସାରା ଉତ୍କଳ ଜନସାଧାରଣଙ୍କ ହୃଦୟରେ ଚିରଜୀବିତ କରାଇପାରିଛି ।

୧୯୮୩ରେ ଗାଁ ମଜଲିସ୍ ପୁସ୍ତକ ପାଇଁ ତାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ସମ୍ମାନିତ କରିଛନ୍ତି । ପ୍ରଜାତନ୍ତ୍ର ପ୍ରଚାର ସମିତିର ସଭାପତି ଥାଇ ସେ ସାରସ୍ୱତ ବିଷୁବ ମିଳନର ପରିକଳ୍ପନା କରିଥିଲେ । ପ୍ରତିବର୍ଷ ଏହି ଉତ୍ସବରେ କବି, ଲେଖକ ଓ ସାହିତ୍ୟିକମାନେ ସମ୍ବର୍ଦ୍ଧିତ ହେଉଛନ୍ତି । ଅହମ୍ମଦନଗର ଦୁର୍ଗରେ ବନ୍ଦୀ ଜୀବନ ଯାପନ କରୁଥିବା ସମୟରେ ସେ ଉକ୍ତ ପୁସ୍ତକ ରଚନା କରିଥିଲେ । ଏହି ପୁସ୍ତକ ପାଇଁ ଆନ୍ଧ୍ର ସରକାର ତଥା ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ପ୍ରଦାନ କରିଥିଲେ ।

ଡକ୍ଟର ମହତାବଙ୍କ ଆନ୍ତରିକ ଉଦ୍ୟମରେ ଓଡ଼ିଶାରେ କ୍ରିଡ଼ାର ବିକାଶ ଆରମ୍ଭ ହୋଇଥିଲା । ବାରବାଟୀ ଷ୍ଟାଡିୟମ୍ ନିର୍ମାଣ ତାଙ୍କରି ପରିକଳ୍ପନା । ଓଡ଼ିଶା ଅଲମ୍ପିକ୍ ଆସୋସିଏସନ୍‌ର ସେ ଥିଲେ ପ୍ରତିଷ୍ଠାତା । ସେ ପ୍ରଜାତନ୍ତ୍ରର ପ୍ରତିଷ୍ଠାତା ଥିଲେ । ଆହୁରି ମଧ୍ୟ ଝଙ୍କାର, ମୀନାବଜାର ପତ୍ରିକାର ପ୍ରଚଳନ କରି ସୁପ୍ତ ଲୋକମାନଙ୍କୁ ଜାଗ୍ରତ କରିଥିଲେ । ଯଥାର୍ଥରେ ସେ ଥିଲେ ଉତ୍କଳକେଶରୀ । ତାଙ୍କର ତିରୋଧାନ ଇତିହାସର ଇତି ଓ ଏକ ଯୁଗର ଅବସାନର ଦ୍ୟୋତକ । ପ୍ରତିଟି ମୁହୂର୍ତ୍ତକୁ କର୍ମମୁଖର କରି ସେ ଗଢ଼ିତୋଳିଛନ୍ତି ଏହି ଓଡ଼ଇଶା ପ୍ରଦେଶ, ଗଢ଼ିଛନ୍ତି ପ୍ରଜାତନ୍ତ୍ର ।



# ଚୌଦ୍ୱାର ପୌରପରିଷଦ, ଚୌଦ୍ୱାର

ଡ. ହରେକୃଷ୍ଣ ମହତାବଙ୍କ ଜୟନ୍ତୀ-୨୦୧୪ ଅବସରରେ ଚୌଦ୍ୱାର ପୌରାଞ୍ଚଳରେ
ବାସକରୁଥିବା ସମସ୍ତ ଜନସାଧାରଣଙ୍କୁ କୃତଜ୍ଞତା ଜ୍ଞାପନ
ସହ ଚୌଦ୍ୱାର ସହରକୁ ସୁନ୍ଦର ଓ ସ୍ୱାସ୍ଥ୍ୟକର
ସହର ଭାବରେ ଗଢି ତୋଳିବାକୁ
ସମସ୍ତଙ୍କ ସହଯୋଗ କାମନା କରୁଛୁ।

୧. ପରିଷଦର ଦେୟ ତଥା ଘର ଟିକସ, ଲାଇସେନ୍ସ ଫି ଏବଂ ଦୋକାନ ଭଡ଼ା ଠିକ୍ ସମୟରେ ପୈଠ କରନ୍ତୁ।
୨. ପରିଷଦ କିମ୍ବା ସରକାରୀ ଜମି ଜବର ଦଖଲ କରନ୍ତୁ ନାହିଁ।
୩. ରାସ୍ତାରେ ଗାଈ, ଗୋରୁ, ଛାଡି ଓ ରାସ୍ତା ଉପରେ ଘର ଉପକରଣ ପକାଇ ଯାନବାହନର ଯିବା ଆସିବାରେ ଅସୁବିଧା ସୃଷ୍ଟି କରନ୍ତୁ ନାହିଁ।
୪. ଜନ୍ମ, ମୃତ୍ୟୁ ଓ ବିବାହ ପଞ୍ଜିକରଣ ଠିକ୍ ସମୟରେ କରନ୍ତୁ।
୫. ପଲିଥିନ୍ ବ୍ୟବହାର ବର୍ଜନ କରନ୍ତୁ ଓ ପରିବେଶର ସୁରକ୍ଷା କରନ୍ତୁ।
୬. ଅଳିଆ ଆବର୍ଜନା ଏଣେତେଣେ ନ ପକାଇ ନିର୍ଦ୍ଦିଷ୍ଟ ସ୍ଥାନରେ ରଖି ସଫେଇ କର୍ମଚାରୀଙ୍କୁ ଦିଅନ୍ତୁ।

## ଆମର ପରିକଳ୍ପନା

୧. ଗାନ୍ଧିଛକରେ ଏକ ନୂତନ କଲ୍ୟାଣ ମଣ୍ଡପ ପ୍ରତିଷ୍ଠା।
୨. ବିରୂପା ନଦୀକୂଳରେ ଲୋକଙ୍କ ଆମୋଦପ୍ରମୋଦ ପାଇଁ ପାର୍କ ଓ ବୋଟିଂ କ୍ଲବ୍ ନିର୍ମାଣ।
୩. ପୌରାଞ୍ଚଳ ମଧ୍ୟରେ ୩ଗୋଟି ସ୍ୱାଗତ ତୋରଣ ନିର୍ମାଣ।
୪. ସମସ୍ତ ୱାର୍ଡରେ କଂକ୍ରିଟ୍ ରାସ୍ତା ଓ ଡ୍ରେନ୍ ନିର୍ମାଣ।
୫. ରାସ୍ତାରେ ବ୍ୟାପକ ଉଜ୍ଜ୍ୱଳ ଆଲୋକ ବ୍ୟବସ୍ଥା କରିବା।
୬. IDSMT ଯୋଜନାରେ ଚୌଦ୍ୱାର ପୌରାଞ୍ଚଳର ସମସ୍ତ ଜନସାଧାରଣଙ୍କ ନିମନ୍ତେ ପାନୀୟ ଜଳଯୋଗାଣ ପାଇଁ ଦଶକୋଟି ଟଙ୍କାର ପ୍ରକଳ୍ପର ଶୁଭାରମ୍ଭ।

ଆସନ୍ତୁ, ସମସ୍ତେ ମିଳିମିଶି ଏହି ବିକାଶ ଧାରାରେ ସାମିଲ୍ ହେବା ଏବଂ ଚୌଦ୍ୱାର ପୌରପରିଷଦକୁ ସରସ ସୁନ୍ଦର ଭାବେ ଗଢି ତୋଳିବା।

| ଶ୍ରୀଯୁକ୍ତ ରାମଚନ୍ଦ୍ର ପ୍ରଧାନ | ଶ୍ରୀମତୀ ମାନସୀ ସ୍ୱର୍ଣ୍ଣପ୍ରଭା ସାମଲ | ଶ୍ରୀଯୁକ୍ତ ରାମଚନ୍ଦ୍ର ପ୍ରଧାନ |
|---|---|---|
| ନିର୍ବାହୀ ଅଧିକାରୀ | ଉପାଧକ୍ଷା | ନିର୍ବାହୀ ଅଧିକାରୀ |
| ଚୌଦ୍ୱାର ପୌରପରିଷଦ | ଚୌଦ୍ୱାର ପୌରପରିଷଦ | ଚୌଦ୍ୱାର ପୌରପରିଷଦ |